# ନିଷ୍ପ୍ରଭ ଏକଲବ୍ୟ

ଗୌରୀବନ୍ଧୁ କର

ପ୍ରକାଶକ

ଗାୟତ୍ରୀ ବୁକ ସପ୍
(ପୁସ୍ତକ ପ୍ରକାଶକ ଓ ବିକ୍ରେତା
କଳ୍ପନା ରୋଡ୍, ଭୁବନେଶ୍ୱର-୧୪

ପରିବେଷକ
ଗାୟତ୍ରୀ, କଳ୍ପନା ରୋଡ଼, ଭୁବନେଶ୍ୱର-୧୪

# ନିଷ୍ପ୍ରଭ ଏକଲବ୍ୟ

ଗଳ୍ପ ସଂକଳନ

ସୌରୀବନ୍ଧୁ କର

ପ୍ରକାଶକ :

ଗାୟତ୍ରୀ ବୁକ୍ ସପ୍

କଳ୍ପନା ରୋଡ଼, ଭୁବନେଶ୍ୱର-୧୪

ପ୍ରକାଶକାଳ :

୧୯୮୯

ପ୍ରଚ୍ଛଦ :

ବଳଦେବ ପ୍ରସାଦ ମହାରଥୀ

ଅଧ୍ୟାପକ

ବି. ଜେ ବ୍ରହ୍ମକଳା ମହାବିଦ୍ୟାଳୟ

ଭୁବନେଶ୍ୱର-୧୪

ମୁଦ୍ରଣ :

କଲ୍ୟାଣୀ ପ୍ରିଣ୍ଟର୍ସ

ପିଠାପୁର, କଟକ

ମୂଲ୍ୟ :

ସାଧା—ଟ ୨୦-୦୦

ବନ୍ଧାଇ—ଟ ୨୪-୦୦

---

NISPRAVA AKALABYA By S. B. Kar Publisher : Gayatree Book Shop, Kalpana Road, Bhubaneswar-14 First Edition-1989 Cover Design. B. Moharatha BBSR-14, Printed at Kalyani printers, Cuttack price-Rs. 20 Delux Price Rs. 24/-

ଓଡ଼ିଆ ସାହିତ୍ୟରେ ପ୍ରବେଶ କରିବା ପାଇଁ ମୋତେ ବାଟ ଦେଖାଇଥିବା ମୋର ଶୁଭାନୁଧ୍ୟାୟୀ ଯଶସ୍ୱୀ ଗାଳ୍ପିକ **ଡକ୍ଟର କୃଷ୍ଣପ୍ରସାଦ ମିଶ୍ରଙ୍କ** ହାତରେ ଏହି "ନିଷ୍ଠୁର ଏକଲବ୍ୟ" ଗଳ୍ପ ପୁସ୍ତକଟି ମୁଁ ବିନମ୍ରତାର ସହ ଭେଟି ଦେଉଛି ।

**ସୌରୀବଂଧୁ କର**

# ସୂଚୀ



---

ଏଇ ଲେଖକଙ୍କର ଅନ୍ୟାନ୍ୟ ରଚନା :

- । ପ୍ରଥମା (ଗଳ୍ପ ସଙ୍କଳନ)
- । ରାମକୃଷ୍ଣ ଶ୍ରୀ ପରମହଂସ
- । ଦେଶପ୍ରେମୀ ସ୍ୱାମୀବିବେକାନନ୍ଦ
- । ଇଚ୍ଛାର ନାମ ପୂଜା

# ସୀତା

'ନୂଆଭଉ ମ...ଲୋ ନୂଆଭଉ...ହେଇଟି କେତେବେଳେ ହେଲାଣି । ଶୁଣୁନ କାହିଁକ ଯେ, ଶୋଇଚ କ ଗୋ ରାଣୀ...ଖଟଟି ଉପରେ । ଖରା ଫରସ୍ ପଡ଼ିଲାଣି । କବାଟ ଖୋଲିବନ କ ? ସକାଳୁ ସକାଳୁ ତୁମ ଦୁଆରକୁ କେତେ ମନ ନେଇ ଆସିଛୁ । ଗଣ୍ଡେ ଚାଉଳ ମିଳିବ ବୋଲି ଯେ ତୁମେ ଦୁଆର ଖୋଲୁନ । ଖୋଲିବ ନା ମୁଁ ଚାଲିଯିବ ।' ବଡ଼ ପାଟିରେ ପାଟିକରି ଉଠିଥିଲା ସୀତା । 'ଯାଉଛୁ, ରହୁନା କାହିଁକ ? ଏ କଡ଼ରେ ପରା ପୁଅଟା କାନ୍ଦୁଛି । ଦୁଧ ଖାଇବାକୁ ଯେତେ ଅଝଟ, ହେଇଗଲି ।' ତରବରରେ କବାଟକୁ ଫିଟାଇଲେ ନମିତା । ଚାଉଳ ମାଣଟେ ଆଣି ଅଜାଡ଼ି ଦେଲି ସୀତା ଅଣ୍ଟିରେ । ଭାଗ୍ୟକୁ ଶାଶୂ ନାହାନ୍ତି । ଏତେ ଚାଉଳ ଦେବାର ଦେଖିଲେ ତା ଉପରେ ନିଶ୍ଚିତ ରୂପେ ବଗର୍ଜି ବକର ବକର ଆରମ୍ଭ କରି ଦେଇଥାନ୍ତେ । ଶାଶୂ ଯେତେ ପାଟି କଲେବ କାହିଁକ କେଜାଣି ଏ ଝିଅଟା ଉପରେ ନମିତାର ଦୟା ଆସେ । ଥିଲା ନଥିଲା ବେଳେ ଆସି ପହଞ୍ଚିଯିବ । ଅଳିକରି କହିବ, ଯେପରି ନମିତା ତାର ସତରେ ନୂଆଭଉ । ଥରେ ଥରେ ଶାଶୂଙ୍କ ଠାରୁ ଗାଳି ଯେ ଏଥିପାଇଁ ସେ ନ ଶୁଣିଛି, ତାହା ନୁହେଁ । ମାଘ ମାସ ସଂକ୍ରାନ୍ତି ଦିନ ସୀତାକୁ ଚାଉଳ ମାଣେ ଅଜାଡ଼ି ଦେବା ବେଳେ ଶାଶୂ ମଝିରକୁ ଫେରି ଦେଖି ପକାଇ ଆରମ୍ଭ କରିଦେଲେ, 'ମୁଁ କ'ଣ ନଖାଇ ନପିଇ ଏମାନଙ୍କ ପାଇଁ ସଞ୍ଚିଛି । ଦେବାର ଯଦି ଏତେ ମନ, ତେବେ ବାପଘରୁ ଆଣି ଅଜାଡ଼ି ଦେଉନା ।' ନମିତା ଚୁପ୍ ରହିଗଲା । କଥା କହିଲେ କଥା ବଢେ । ତାପରେ ଶାଶୂ ଗୁରୁଜନ । ତାଙ୍କ କଥାକୁ ଏତେ ଛଳ କଲେ ଚଳିବ ।

ସୀତା ଅଣ୍ଟିରେ ଚାଉଳ ଅଜାଡ଼ି ଦେଇ ତରତରରେ ଫେରି ଆସୁଥିଲା ନମିତା । ପୁଅଟା ରାହା ଫଟାଇ କାନ୍ଦୁଛି । ବଡ଼ ଅଝଟିଆ ସେ । ଦୁଧ ପିଇ ମନ ଶାନ୍ତ ନ ହେଲା ପର୍ଯ୍ୟନ୍ତ ଏଭଳି ତଡ଼ି କରି କମାଇବ ।

ନୂଆଭଉ ମ ! ପଳାଉଛ କାହିଁକ ଯେ ? ଟିକଏ ରୁହନା ମୋର ତୁମ ସାଙ୍ଗରେ କଥାବାର୍ତ୍ତା ଅଛି । ପୁଅଟିକୁ ଏଇଠିକି ନେଇ ଆସ ।'

ସୀତା କଥାକୁ ଏଡ଼ି ପାରିଲା ନାହିଁ ସେ । ପୁଅକୁ ଧରି ବସି ପଡ଼ିଲା ପିଣ୍ଡା ଉପରେ ଶାଶୁ ନାହାନ୍ତି । କେତେ ଦିନ ହେଲା ଘରେ ଏକା ସେ । ଦେହରେ ଶୋଇବାକୁ ହଲଆ ଲେକଟେ ଆସୁଛି । ଘର କାମ ଡେରି ହେଲେ ବ୍ୟସ୍ତ ହେବାର କିଛି ନାହିଁ ।

'ତୋର ଆଜକାଲି କ'ଣ ଦେଖା ନାହିଁ ? କୁଆଡ଼େ ଯାଇଥିଲୁ କି ? ପଚାରିଲା ନମିତା । ନୂଆଭଉଣୀ ! ଗୋଟେ କଥା ପଚାରିବି । କହିବ ନା । କୁନି ପୁଅଟା ଜନ୍ମବେଳେ ତୁମକୁ କେମିତି ଲାଗିଲା ? ପିଲାଟା ପେଟ ଭିତରେ କ'ଣ ଖାଲି କଷ୍ଟ ଦେଲା ? ସୀତା ପଚାରିଲା । ନମିତାକୁ ଅଡ଼ୁଆ ଅଡ଼ୁଆ ଲାଗୁଥିଲା ତାର ଏ ପ୍ରକାର ପ୍ରଶ୍ନ । ସୀତା ଝିଅଟାର ବୟସ ଅତି ବେଶି ହେଲେ ତେର ଚଉଦ ବର୍ଷ । ପିଲା ଦିନରୁ ବାପ ମାଆଙ୍କୁ ହରାଇ ପିତୃ ମାତୃ ଛେଉଣ୍ଡ । ନମିତାର ଶାଶୁଘର ଠାରୁ ଦିନ କିଲୋମିଟର ଦୂରରେ ତାର ଘର । ଘର ଛପର ହୋଇ ପାରେନି ପ୍ରତ୍ୟେକ ବର୍ଷ । ଭିକ ମାଗି ଚଳିଯାଏ ଗାଁ ବୁଲି ଦିନଟା ବୁଲି । କେହି ତାକୁ ହଦାଦାର କରନ୍ତି ନା । ପୁଅ ଘୂର କୁଣ୍ଡୀ ଝିଅଟେ ।

'ତୁ କାହିଁକି ଏମିତି କଥା ପଚାରୁଛୁ କହେ ! ଆଜିଠାରୁ କ'ଣ ଛୁଆ ଧରିବାକୁ ମନ ହେଲାଣିକି । ଆଗେ ବାହା ହୋଇ ପଡ଼ । ତାପରେ ପିଲା ପିଲି କଥା । ଖାଲି ଅଡ଼ୁଆ ଲୋ... ଛୁଆ ପିଲା ଧନ୍ଦା । ଦଶମାସ ଧରି ପେଟରେ ଧରିବା କେତେ କଷ୍ଟ ! ଯେତିକି ଯେତିକି ବଡ଼ ହେବ, ସେତିକି ସେତିକି କଷ୍ଟ । ତଥାପି ନାରୀ ଜନମତ ସେଇଥି ପାଇଁ । ସଂସାରରେ କଷ୍ଟ ନଥିଲେ ଆନନ୍ଦ କେଉଁଠୁ ମିଳନ୍ତା । ତୋର ଆଜି ହୋଇଛି କ'ଣ ? ଖାଲି ଖୁସି ଜଣା ପଡ଼ୁଛୁ ତ ? ଏମିତି ଅଡ଼ୁଆ ପ୍ରଶ୍ନ କାହିଁକି ପଚାରୁଛୁ ବା ?'

ଚୁପ୍ ଚାପ୍ ବସିଥିଲା ସୀତା । ଶୁଣୁଥିଲା ନମିତା କଥା । ସେହି ଘରର ଗୃହକାର୍ଯ୍ୟ ଓ ବାଡ଼ି ବଗିଚାର ପରିସର ଭିତରେ କେବଳ ତାର ଅଧିକାର । କାହା ସହିତ ବସି ଗପ ସପ ହେବା କେହି ଦେଖି ନାହିଁ ତାକୁ । ସ୍ନେହ ପୁଅର ଦାୟିତ୍ୱ । ଘର କାମରେ ତାର ସମସ୍ତ ଏହି ସୀତା ଗାଁ ବୁଲି ଗଲାବେଳେ ଟିକିଏ ବସି ପଡ଼େ ତାର ପାଖରେ । ଅନେକ ସମୟରେ ନମିତା ଭାବେ ସୀତା କଥା । ସ୍ନେହ ଝିଅଟେ, ବାପାମାଆଙ୍କୁ ହରାଇ କେତେ ଦୁଃଖରେ ଚଳୁଛି ଭାବିବା ମାତ୍ରେ ତା ଆଖିରେ ଲୁହ ଜକେଇ ଆସେ । ମା ବା ଛେଉଣ୍ଡ ଏହି ଝିଅଟା ପ୍ରତି ତାର ଅନେକ ମମତା ।

ସୀତା ଘର ଯୋଗ୍ୟ ହୋଇଥିଲା ଗତ ବର୍ଷ । ସେ କିଛି ଜାଣି ପାରି ନଥିଲା । ତାପରଦିନ ସକାଳେ ନମିତା ପାଖରେ ପହଞ୍ଚି ନୂଆଭଉଣୀ, ନୂଆଭଉଣୀ-ଡାକୁଥିଲା । ଘରେ କ'ଣ ଘଟିଗଲା କହିବା ବେଳେ ନମିତା ତାକୁ ଘରେ ଷୋଳଦିନ ଚୁପ୍ ଚାପ୍ ରହିବାକୁ କହିଥିଲା ।

ସେହି ସୀତାର ଆଜି ଏଭଳି ପ୍ରଶ୍ନରେ ଚମକି ଉଠିଥିଲି ସେ ।

ଅତି ନରମ ଗଳାରେ ପଚାରିଲି ନମିତା, 'ଆଲୋ ସୀତା ! ତୋର ଆଜି କ'ଣ ହୋଇଛି ଏମିତି ପଚାରୁଛୁ । ଆଗେ ବାହା ହୋଇ ପଡ଼ । ତାପରେ ସିନା ଛୁଆ, ବାହା ନହେବା ଆଗରୁ ଛୁଆ କଥାରେ ଏତେ ଚିନ୍ତା କାହିଁକି ?'

"ନାଇଁମ ନୂଆଭଉଁ; ତୁମ ଆଗରେ କ'ଣ ଲୁଚାଇବି । ମୋ ପେଟ ଭିତରେ କ'ଣ ଗୋଟେ ଆଜିକୁ ମାସେ ହେଲା ହଲଚଲ ହେଉଛି । ଗୋଟେ ଛୁଆଟେ ନୂଆଭଉଁ । କେମିତି ପେଟକୁ ଆସିଲା ଜାଣି ପାରୁନି । ପେଟଟା ଭାରି ଭାରି ଲାଗୁଛି । ଖାଇବାକୁ କିଛି ମନ ହେଉନି । ଯାହା ଖାଇଲେ ବାନ୍ତି ଲାଗୁଛି । ଏକୁଟିଆ ସେପେଇ କେମିତି କରିବି । ଗାଁ ସାରା ଜାଣି ଗଲେଣି, କହୁଛନ୍ତି ମୋ ପେଟରେ ଛୁଆଟେ କାହାର । ମୁଁ କେମିତି ଜାଣିବି ଯେ ?"

ନମିତା ଚମକି ଉଠିଲା । ସୀତା ମା' ହେବାକୁ ଯାଉଛି । କିନ୍ତୁ କିଏ ସେହି ଲୋକ ଯେ ସୀତାପରି ନିରୀହ ବାଳିକାଟିର ସବୁକିଛି ହରଣ କରିନେଲା । ମନରେ ଅନେକ ପ୍ରଶ୍ନ । ସେ ତା ଠାରୁ କଥା ଆଦାୟ କରିବାପାଇଁ ଘର ଭିତରରୁ ଚା' କପେ କରି ପିଇବାକୁ ଦେଇ ପୁଣି ପଚାରିଲା,

"ଆଲୋ ସୀତା ! ତୁ କାହା ସାଙ୍ଗରେ ଶୋଇ ଥିଲୁକି । ସେ ଟୋକା ନା ମରଦ ନା ବୁଢ଼ା । ତୁମ ଗାଁର କେଉଁ ଟୋକା ସାଙ୍ଗରେ ତୋର ଭଲ ଭାବ ଅଛି କି ?"

ହସି ଉଠିଲା ସୀତା । "ନୂଆଉଁ ! ମୋ ସାଙ୍ଗରେ କିଏ ଶୋଇବ ଯେ । ଗାଁ ସାରା ଦେଖିଲେ ତ ନାକ ଟେକନ୍ତି । ତୁମେ ସିନା ପାଠ ପଢ଼ିଛ—ବାହ୍ମଣ ଘର ବୋହୂ । ମୋତେ ଟିକିଏ ଆଦର କରୁଛ । ସମସ୍ତେ ସୀତାକୁ ଦୂରରୁ ମାର୍ ମାର୍ । ମୋ କପାଳରେ ଘଇତା ସୋ ଆଗ କୋଉଁଠୁ ଆସିବ । କିଏ ମୋତେ ବାହା ହେବ । ଗାଁ ବାଲାଏ ମୋତେ ଗାଁ ଛାଡ଼ି ଦେବାକୁ କହୁଛନ୍ତି । କୁଆଡ଼େ ଯିବି ଯେ । ସେଇ ଘରଟାରେ ପଡ଼ିଛି । ମୋତେ ଧମକ ଦେଇଛନ୍ତି "କୋହୁନୁ କିଏ ତୋ ସାଙ୍ଗରେ ଲଟରପଟର ହେଲା ।"

ମୁଁ ଜାଣିଥିଲେ କହନ୍ତିନି । କହିଲେ କିଏ ସତ ଯିବ ଯେ ? ତୁମ ଆଗରେ କହୁଛି ନୂଆଉଁ ।"

ଡିସେମ୍ବର ମାସ ତଳେ ତୁମ ଗାଁରୁ ଗଲାବେଳକୁ ଡେରି ହୋଇଗଲା । ଘୋର ଅନ୍ଧାର । ମୁଁ ଧୀରେ ଧୀରେ ଚାଲିଥିଲି । ହଠାତ୍ କିଏ ମୋତେ ପୋଲ ତଳେ ମୋ ଆଖି ଓ ପାଟିରେ ହାତଦେଇ ତଳକୁ ଟାଣିନେଲା । ଆଖିରେ ଲୁଗାଟେ ବାନ୍ଧିଦେଇ ମୋ ଚିରା ଲୁଗାଟିକୁ ଦେହରୁ ଖୋଲିଦେଲା । ତାପରେ···ମୋତେ କିଛି ମାଲୁମ ପଡ଼ି ନ ଥିଲା ।

ମୋତେ ତଳେ ପକାଇଦେଇ ସେ ମୋ ଉପରେ ଶୋଇପଡ଼ିଲା । ମୁଁ କ'ଣ ଜାଣେ ଯେ । ସେ ଟୋକାଟାଏ ହେବ ବୋଧ ହୁଏ କୁଆଡ଼େ ଗଲା ଜାଣେନି । ମୁଁ ଧଇଁସଇଁ ହୋଇ ପଡ଼ିଥିଲି । କିଛି ସମୟ ପରେ ଧୀରେ ଧୀରେ ଉଠି ଲୁଗା ପିନ୍ଧି ଘରକୁ ଚାଲିଗଲି ।

ମାସେ ଦି'ମାସ ମୋତେ କିଛି ଜଣା ପଡ଼ିଲା ନାହିଁ । ଆଜିକାଲି କିନ୍ତୁ ଦେହ ଖରାପ ଲାଗୁଛି । ମୋତେ ଗାଁରେ କହୁଲେ ରହିବୁ ଯଦି ଭଙ୍ଗେଇ ଦେଇ ଆ । ଭଙ୍ଗେଇବି କ'ଣ ? ଡାକ୍ତରଖାନାକୁ ଯିବାକୁ କହୁଛନ୍ତି । କିଏ କହୁଛି ବେଧିଛୁଆ ହେବ; କିଏ କହୁଛି ସୀତାଟା ସତୀ ହୋଇଗଲା । ମୁଁ କ'ଣ ଜାଣେ ଯେ ନୂଆଭି । ମୋତେ କିନ୍ତୁ ଭଲ ଲାଗୁଛି । କୁନି ପୁଅଟେ ହବ କହୁଛନ୍ତି । ପୁଅଟେ ହୁଅନ୍ତା କି ? ମୁଁ ତାକୁ ଧରି ଗାଁ ଗାଁ ବୁଲନ୍ତି । ପୁଅ ହେଲେ ନୂଆଭି; ମୋତେ ଟିକିଏ ଦୁଧ ଦେବନି ପେଇବାକୁ ? ମୁଁ ତୁମକୁ ଦେଖାଇବି । ଆମ ଗାଁର ଲୋକଗୁଡ଼ାକ ଜମା ଭଲ ନୁହଁନ୍ତି । ମୋ ଆଡ଼େ ଚାହିଁ କେତେ ଟାହିଟାପରା, କେତେ କଥା କହୁଛନ୍ତି । ମୁଁ କିଛି ବୁଝି ପାରୁନି କିଏ କ'ଣ କହୁଛି । ମୋର ସେଥିରେ ଯାଏ ଆସେ କେତେ । ମୁଁ ମୋ କାମରେ ଲାଗିଛି । ମୋର ପୁଅ ହେବ ।"

"କହନା, ନୂଆଭି । ମୁଁ ତା ନାଁ କ'ଣ ଦେବି । ତୁମ ପୁଅ ନାଁ ଦେଇଦେବି । ମୋ ବାପା ଥିଲାବେଳେ ତାର କାଳେ ପୁଅଟେ ପାଇବାକୁ ଖୁବ ମନ ଥିଲା । ପୁଅ କ'ଣ ଏତେ ଦରକାର ।"

"ମୋର ପୁଅ ହବନା ନୂଆଭି । ମୁଁ ତାକୁ ଧରି ଗାଁ ଗାଁ ବୁଲିବି ।"

ସୀତା ଗପି ଚାଲିଥିଲା । ଆଖିରେ ତାର ଲୁହ ଆସି ଯାଇଥିଲା । କିନ୍ତୁ ମନରେ ମା' ହେବାର ଯେଉଁ ଖୁସି ତାହା ପୂରିଥିଲା ।

ନମିତା ଦାଣ୍ଡରୁ ଉଠି ଛିଡ଼ାହେଲା । ପୁଅଟା କେତେବେଳୁ ତା କୋଳରେ ଶୋଇ ପଡ଼ିଲାଣି । ବେଳ ଅନେକ ହେଲାଣି । ଆଉ ଦିନେ ଆସିବାକୁ ସୀତାକୁ କହି ଭିତରକୁ ଚାଲିଗଲା ସେ ।

× × ×

ମୁଁ ଦକ୍ଷିଣ ଭାରତ ଭ୍ରମଣରେ ବାହାରିଥାଏ ନମିତାକୁ ସାଙ୍ଗରେ ଧରି । ଭୁବନେଶ୍ୱର ଷ୍ଟେସନରୁ ଗାଡ଼ି ଚଢ଼ିବାକୁ ହେବ । ରାତି ଦୁଇଟା ନମିତା ଓ ମୁଁ ଷ୍ଟେସନକୁ ପଶିଗଲୁ ବେଳକୁ ଖୁଣ୍ଟ କୋଣରେ ଶୋଇଥିବା ଭିକାରୁଣୀଟେ ଅତି ଧୀର ଗଳାରେ ଅତ୍ୟନ୍ତ କାକୁସ୍ଥ ହୋଇ ମାଗୁଥିଲା, "ବାବୁ ! ତୁମର ଧରମ ହେବ । ପଇସାଟାଏ ଦିଅ । ମୋ ଛୁଆଟା ରୋଗରେ ପଡ଼ିଛି । ଦି ଦିନ ହେଲା ଉପାସ । କିଛି ଖାଇନି ବାବୁ । ତୁମ ଘର ଧନରେ ଭର୍ତ୍ତି ହୋଇଯିବ । ମୋତେ ଦୟାକର ବାବୁ ।"

ତାର କରୁଣ ନିବେଦନରେ ଆଖି ମୋର ଛଳ ଛଳ ହୋଇ ଉଠୁଥିଲା । ପକେଟ୍ ଅଣ୍ଡାଳି ଦେବାବେଳକୁ ଟଙ୍କାଟାଏ ହାତରେ ପଡ଼ିଲା । ମନ ବଳିଲା ନାହିଁ ଟଙ୍କାଟିଏ ଦେବାକୁ । ନମିତାକୁ ମାଗିଲି ତାଙ୍କ ହ୍ୟାଣ୍ଡବ୍ୟାଗରୁ ଦଶ ପଇସିଟିଏ ବାହାର କରି ଦେବାପାଇଁ । ସେ ପଇସା ପକାଇବା ମାତ୍ରେ ତାକୁ ଦେଖିପାରି ହଠାତ୍ ଭିକାରୁଣୀଟି କହି ଉଠିଲା, "ନୂଆଈଁ; ତୁମେ ।" ଭୋ ଭୋ କରି କାନ୍ଦି ପକାଇଲା ସେ ।

ବିସ୍ମିତ ଭାବରେ ନମିତା ତା ଆଡ଼କୁ ଚାହିଁ ରହିଥିଲା । ଆଖି ଆଗରେ ସୀତାର କଙ୍କାଳସାର ଦେହ ଓ ଲୁଗା ଭିତରେ ଗୁଡ଼ା ହୋଇ ପଡ଼ିଥିବା ଛୋଟ ଛୁଆଟାକୁ ଚାହିଁ ନମିତା ପଚାରିଲା, "ଆଲୋ ସୀତା ! ତୁ ଏଠାରେ କାହିଁକି ? କେବେ ଗାଁରୁ ଆସିଲୁ । ସେଇ ଦିନରୁ ତୋ ସାଙ୍ଗରେ ଦେଖା ହୋଇନି ।'

ସୀତା ଆଖିରୁ ଲୁହ ଟପ୍ ଟପ କରି ଖସୁଥିଲା । ସେ କହି ପାରୁ ନଥିଲା କିଛି । କେବଳ ଆମ ଦୁହିଁଙ୍କ ଆଡ଼କୁ ଅପଲକ ନୟନରେ ଚାହିଁ ଛୁଆଟାକୁ ଦେଖୁଥିଲା ।

ନମିତା ମୋତେ ଆଖିର ଇସାରାରେ କୋଡ଼ିଏ ଟଙ୍କା ଦେବାକୁ କହିଲା । ଦଶ ପଇସିଟା ସମେତ ତାକୁ କୋଡ଼ିଏ ଟଙ୍କା ବଢ଼ାଇଦେଇ ନମିତା କହିଲା, "ସୀତା ! ମୁଁ ବାହାରକୁ ଯାଉଛି, ଫେରି ଆସିଲେ ତୋ କଥା ବୁଝିବି ।"

ପ୍ଲାଟଫର୍ମରେ ଗାଡ଼ି ଆସି ଲାଗି ଗଲାଣି ସେତେବେଳକୁ । ତରତରରେ ଆମେ ଟ୍ରେନରେ ଚଢ଼ିଗଲୁ । ନମିତା ମୋତେ ସୀତାର କରୁଣ କାହାଣୀ ଶୁଣାଉଥିଲା । ମୋ ମନ ଭିତରେ ସେତେବେଳକୁ ପ୍ରବଳ ଝଡ଼ ବହୁଥିଲା । ଅନେକ ଦିନ ତଳେ ବସ୍‌ରୁ ଓହ୍ଲାଇ ଘରକୁ ଫେରିବା ବେଳେ ପୋଲ ତଳୁ ଚେୟାରମ୍ୟାନ ନରି ମହାପାତ୍ରଙ୍କର ପୁଅ ଅସ୍ତବ୍ୟସ୍ତ ଭାବରେ ଉପରକୁ ଉଠିଥିବାର ଦେଖିଥିଲି ଏବଂ କିଛି ସମୟ ପରେ ଝିଅଟିଏର ସକ୍‌ସକ୍ କାନ୍ଦ ଶୁଣି ପାରିଥିଲି ।

କିଛି କହି ପାରୁ ନଥିଲି ନମିତାକୁ । କେବଳ ତା କଥା ଶୁଣି ଯାଉଥିଲି ଏବଂ ଫେରିବା ପରେ ସୀତାର କିଛି ବ୍ୟବସ୍ଥା କରିବା ବୋଲି ବାରମ୍ବାର ବୁଝାଉଥିଲି ।

ମେଲ୍‌ଗାଡ଼ିଟା ଦ୍ରୁତ ଗତିରେ ଚାଲିଥିଲା । ନମିତା ତା କଥାକୁ ଥରକୁ ଥର ଦୋହରାଉ ଥିଲା । ମୁଁ ଝରକାବାଟେ ଘନ ଅନ୍ଧକାର ଭିତରେ ଗଛ, ଲତା, ଆକାଶ ଓ ତାରା ଇତ୍ୟାଦିକୁ ଲକ୍ଷ୍ୟ କରୁଥିଲି ।

# ନାଟକର ଶେଷ ଦୃଶ୍ୟ

"ହ୍ୟାଲୋ, ହ୍ୟାଲୋ"

ଧେତ୍ତେରିକ, ଟେଲିଫୋନଟା ଆଦୌ କାମ କରୁ ନାହିଁ । ହୋ ପିଏ ମହାଶୟ ! ଏଆଡ଼େ ଟିକେ ଶୁଣିଯିବ କି?"

ମନ୍ତ୍ରୀଙ୍କ ଡାକରେ ପିଏ ମହାଶୟ ତରବରରେ ଚୌକି ଛାଡ଼ି ଦୌଡ଼ିବାକୁ ଆରମ୍ଭ କଲେ ।

"ସାର୍ ।"

"ଶୁଣ ! ଯାହା ଯାହା ଫାଇଲ୍ ଅଛି, ତାକୁ ଯେ କୌଣସି ମତେ ଆଜି ମୋତେ ପୁଟ୍ଅପ୍ କର । କାଲିକଥା କିଛି କହି ହେବ ନାହିଁ । ଇଣ୍ଡଷ୍ଟ୍ରୀ ଡିପାର୍ଟମେଣ୍ଟର ଯାବତୀୟ ଲମ୍ବିତ କାଗଜକୁ ଆଣି ସବୁଥିରେ ଫାଇନାଲ୍ ନୋଟିଂ ନେଇଯାଅ । ବାହାରେ ଥିବା ଯେଉଁ ବ୍ୟବସାୟୀଙ୍କୁ ଆଜି ରାତିଭିତରେ ଯେ କୌଣସି ଉପାୟରେ ମୋତେ ଦେଖାକରିବାକୁ ଟେଲିଫୋନ୍ କର । ସେକ୍ରେଟାରୀଙ୍କୁ ଟେଲିଫୋନ୍ କର ଅର୍ଡରଗୁଡ଼ାକ ଫାଇନାଲ କର ।"

"ସାର୍, ଆଜି ସମସ୍ତେ ଚାଲି ଗଲେଣି । ମୁଁ ଓ ପ୍ରାଇଭେଟ୍ ସେକ୍ରେଟାରୀ ଅଛୁ । ଆସନ୍ତାକାଲି ପର୍ଯ୍ୟନ୍ତ ରହିଲେ କ୍ଷତି କ'ଣ ?"

"ଇଉ ଇଡ଼ିୟଟ୍, ଖାଲି ପିଏ ସିନା ହୋଇଛ-ବୁଦ୍ଧି ବୃତ୍ତି ନାହିଁ । ସନ୍ଧ୍ୟା, ଚାକିରୀ ଚାଲିଗଲା ଛୁଇଁ । ଆଜି ଅଛି; କାଲିକି କ'ଣ ହେବ କିଏ କହିବ । ଯାଅ, ରାତିରେ ବସି ସବୁକାମ ଫଇସଲା କର । ଷ୍ଟାଫ୍ ମାନଙ୍କୁ କାର୍ ପଠାଇ ଘରୁ ନେଇଆସ । ଗୋ କ୍ୟୁଇକ୍ଲି ।"

ପିଏ ମୁଣ୍ଡଟାକୁ ତଳକୁ ପୋତି ବାହାରକୁ ଚାଲିଗଲେ ।

ମନ୍ତ୍ରୀ ଦାମୋଦର ସରବରାକାର ପୁଣି ଟେଲିଫୋନ୍ ଘୁରାଇବାକୁ ଲାଗିଲେ । ମନରେ ତାଙ୍କର ଅସଂଖ୍ୟ ଚିନ୍ତା । ତାଙ୍କ ଦଳଭିତରେ ବିଦ୍ରୋହ । ତେଣୁ କମ୍ପିତ ଲଙ୍କାପୁର

ଧ୍ୱଂସ ମାଲଗିବ । ସମସ୍ତେ ଯୋଉଁଜଲ ଗ୍ଭରଖାର ହୋଇଗିବେ । ଅସନ୍ନ ବିମଦର୍କୁ କୃପର୍ଶ ହଜାର ପାଇବେ, ତାହାହିଁ ଥିଲା ତାଙ୍କର ଚନ୍ତାର ବିଷୟ । ଦୀର୍ଘଦିନ ହେଲା ମନ୍ତ୍ରୀ କଣ ମଧ୍ୟ ମୋହ ତାଙ୍କର ଗର୍ଜନ । କ୍ଷମତାକୁ ଯେ କୌଣସି ଉପାୟରେ ଧରି ରଖିବାକୁ ହେବ । କ୍ଷମତା ଗ୍ଭଲଗଲେ ଜଣେ କାହାକୁ ପଗ୍ଭରେ । ଯାହା ସେ ଶୁଣୁଛନ୍ତି, ତାହା ଯଦି ସତ୍ୟ ହୋଇଥାଏ, ତେବେ ସ୍ଥିତ ମାଡିବା ଦେଳକୁ ସବୁ ଖତମ । ବେଳ ଥାଉ ଥାଉ କିଛି ଗୋଟାଏ ବ୍ୟବସ୍ଥା କରିବା ଦରକାର । ଟେଲିଫୋନ୍‌କୁ ପୁଣି ଗ୍ଭଇଲେ ଶ୍ରୀଯୁକ୍ତ ସରବରାକାର । ସବୁବେଳେ ଏନ୍‌ଗେଜ୍ ସାଉଣ୍ଡ । ବିରକ୍ତ ଲାଗୁଥିଲା ଟେଲିଫୋନ୍ ଡିପାର୍ଟମେଣ୍ଟ ଉପରେ । ମୁଣ୍ଡରେ ହାତଦେଇ ଅତ୍ୟନ୍ତ ଚିନ୍ତାରେ ପୁଣିଥରେ ନିଜକୁ ହଜାଇଦେଲେ । ବହୁଦିନର କଥା ତାଙ୍କର ମନେ ପଡ଼ୁଥିଲା । କଲେଜରେ ପାଠପଢ଼ିବା-ବେଳେ ସବୁବେଳେ ପ୍ରକ୍‌ସିକର ପରସେଣ୍ଟେଜ୍ ପାଇଥିଲେ । ପରୀକ୍ଷାରେ ପାଶ୍ କରିବା ଥିଲା ତାଙ୍କ ପାଇଁ କଷ୍ଟ । ଅତି କ୍ରତ୍ରତାରେ ରାଜନୀତି ପରିବାରରେ ବାହା ହୋଇ ପଡ଼ିଲେ । ଶ୍ୱଶୁର ଥିଲେ ଅତି ଟାଣୁଆ ମନ୍ତ୍ରୀ ସେତେବେଳେ । ପାଠରେ ଡୋରି ଲଗାଇ ଦେଇ ପଶିଗଲେ ରାଜନୀତିରେ । କେମିତି କ'ଣ କରିବାକୁ ହୁଏ ଶିଖି ଯାଇଥିଲେ ଶ୍ୱଶୁରଙ୍କଠାରୁ । ଥରକୁ ଥର ଦଳବଦଳ କରି ମନ୍ତ୍ରୀ ହୋଇଛନ୍ତି । କେଉଁଠାରେ ହେଲେ ଅସୁବିଧା ଭୋଗ କରି ନାହାନ୍ତି । ଲୋକମାନେ ମଧ୍ୟ ତାଙ୍କ ନିଷ୍ପତ୍ତିକୁ ବାହାବା କରନ୍ତି । କିନ୍ତୁ ଆଜି ତାଙ୍କର ଭୟ । ଅପରପକ୍ଷ ନେବେ କି ନାହିଁ ସନ୍ଦେହ । ଟେଲିଫୋନ୍‌ଟା କାମ କରନ୍ତା ଭଲ ।

ବ୍ୟସ୍ତ ଭାବରେ ଚଉକିରୁ ଉଠି ଠିଆ ହୋଇ ପଡ଼ିଲେ ଶ୍ରୀ ସରବରାକାର ପାହୁଣ୍ଡେ ପାହୁଣ୍ଡେ ପାଦପକାଇ ମୁଖ୍ୟମନ୍ତ୍ରୀଙ୍କ ପ୍ରକୋଷ୍ଠକୁ ଗ୍ଭଲିଲେ ।

ଦ୍ୱାର ଖୋଲି ଭିତରେ ପଶିଲେ ସେ । ଚେୟାରରେ ବସିବାକୁ ତାଙ୍କର ସାହସ ହେଉ ନଥିଲା । ଅତି ଧୀର ଗଳାରେ କହିଲେ, 'ସାର୍ !'' ମୁହଁ ବୁଲାଇ ଗ୍ଭହିଁଲେ ମୁଖ୍ୟମନ୍ତ୍ରୀ ମିଷ୍ଟର ଜୟରାମ ପଟ୍ଟବର୍ଦ୍ଧନ । ବସିବାକୁ ନିର୍ଦ୍ଦେଶ ଦେଲେ ସରବରାକାରଙ୍କୁ । ମିଷ୍ଟର ପଟ୍ଟବର୍ଦ୍ଧନଙ୍କ ବ୍ୟକ୍ତିତ୍ୱରେ ଦ୍ରବୀଭୂତ ହୋଇ ଗଲେ ସେ । ଏକା ଏକା ସବୁ ନିର୍ବାଚନ ସଭାରେ ବୁଲି ଭାଷଣ ଦେଇ ସେ ଦଳକୁ ବିଜୟୀ କରାଇଥିଲେ । ଅତ୍ୟନ୍ତ ପ୍ରତିଭା ସମ୍ପନ୍ନ, ତୀକ୍ଷ୍ଣ ବୁଦ୍ଧି ଯୁକ୍ତ ଓ ସଂସ୍କୃତଯୁକ୍ତ ମିଷ୍ଟର ପଟ୍ଟବର୍ଦ୍ଧନ । ଦୀର୍ଘ ଦୁଇବର୍ଷ ହେଲା ତାଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ହେବାରେ ଲାଗିଛି ଦୁଇଟଙ୍କାରେ ଗ୍ଭଉଳ କିଲୋ ବିକ୍ରୀ ହେଉଛି । ଗରିବ ଗୁରୁବାଙ୍କୁ ସୁବିଧାରେ ବ୍ୟାଙ୍କରୁ ଋଣ ମିଳି ପାରୁଛି । ବେକାରି ସମସ୍ୟାରେ ସମାଧାନ ପାଇଁ ଋଣ ଦିଆଯାଉଛି । ନାନାଦି କ୍ଷୁଦ୍ର କ୍ଷୁଦ୍ର ଶିଳ୍ପମାନ ଗ୍ଭରିଆଡ଼େ ଗଢ଼ି ଉଠୁଛି । ସାହିତ୍ୟର ବିକାଶ ଘଟି ଗ୍ଭଲିଛି । ସାହିତ୍ୟ ସଭାରେ ସେ ଉପସ୍ଥିତ ହୋଇ ସମବେତ ସାହିତ୍ୟିକମାନଙ୍କୁ ରାଷ୍ଟ୍ରନିର୍ମାଣ ଦିଗରେ ଆଗେଇ ଆସି

ସରକାରଙ୍କୁ ପରାମର୍ଶ ଦେବାକୁ ଆହ୍ୱାନ ଦେଉଛନ୍ତି । ସାହିତ୍ୟ, ସଂସ୍କୃତି ଓ କ୍ରୀଡ଼ାର ଉନ୍ନତି ପାଇଁ ସେ ଯାବତୀୟ ଅନୁଦାନମାନ ଦେଇଛନ୍ତି । ମୋଟା ମୋଟି କହିଲେ ପ୍ରତ୍ୟେକ କ୍ଷେତ୍ରରେ ସରକାରର ସଫଳତାର କାହାଣୀ ପ୍ରସ୍ଫୁଟିତ ହେବାରେ ଲାଗିଛି ।

କିଛିକାଂଶରେ ସରକାର ଯେ ବଦନାମ ନ ହୋଇଛି ତାହା ନୁହେଁ । ରାଜ୍ୟରେ ନାରୀ ଧର୍ଷଣର ମାତ୍ରା ଟିକିଏ ବଢ଼ି ଯାଉଛି । ଛାତ୍ର ଆନ୍ଦୋଳନ ତ ପ୍ରତ୍ୟେକ ଦିନର ଘଟଣା । ଦୁର୍ନୀତିର ପ୍ରମାଣ ନେଇ ବିରୋଧିଦଳ ବେଶି ବେଶି ଖାଲି ପାଟି କରୁଛନ୍ତି । ଦୁର୍ନୀତି ସମସ୍ତେ କରୁଛନ୍ତି ଓ କରିଥିଲେ, ଏଥିରେ କିଛି ନୂତନତ୍ୱ ନାହିଁ । ସରକାରରେ ରହିବାଦଳ ପୁଣି ନିର୍ବାଚନ ଲଢ଼େଇକୁ ଆସିବାବେଳେ କିଛି ଟଙ୍କା ଦରକାର ହୁଏ । ସଞ୍ଚୟ ଆଗରୁ ନ କରିଥିଲେ କେମିତି ନିର୍ବାଚନ ଲଢ଼ିବେ । ଏଥିରେ ମୁଖ୍ୟମନ୍ତ୍ରୀଙ୍କୁ ଦୋଷ ଦେଇ ଲାଭ ନାହିଁ । ବିରୋଧିଦଳର ଲୋକମାନେ କେବଳ ଫମ୍ପାଧ୍ୱନି ଦେଇ ବଦନାମ କରିବାର ଅପଚେଷ୍ଟା କରୁଛନ୍ତି । ମୁଖ୍ୟମନ୍ତ୍ରୀ ନିଜେ ଜଣେ ସୁପୁରୁଷ ଓ ରାଜଯୋଗୀ । ନାରୀ ସାନ୍ନିଧ୍ୟତ ଦୂରରକଥା, ନାରୀର ଛାଇ ପଡ଼ିଲେ ସେ ରାତିରେ ମଧ୍ୟ ଗାଧୋଇ ପଡ଼ନ୍ତି । ତେଣୁ ପୂର୍ବରୁ ତାଙ୍କର ବ୍ୟକ୍ତିଗତ ସଚୀବ ଥିବା ପଞ୍ଜାବୀ ଝିଅଟାକୁ ସେ ବଦଳାଇ ଦେଇଛନ୍ତି । ଆଜିକାଲି ଟୋକାମାନେ ବେଶି ରାଜନୀତିରେ ଯୋଗ ଦେଉଥିବାରୁ କେତେବେଳେ କିଏ ଏବେ କ'ଣ ଟିକେ କରିଦେଲା, ତାକୁ ଧର୍ଷଣ କୁହାଯାଇ ପାରିବ ନାହିଁ । ସବୁ ଯୁଗରେ ନାରୀ ପୁରୁଷର ଭୋଗ୍ୟ ହୋଇ ରହିଛି । ଆଜିକାଲି ଝିଅମାନେ ମଧ୍ୟ ବେଶିଦିନ ଅଭିଆଡ଼ି ରହୁଛନ୍ତି । ସେମାନଙ୍କର ଯୌନକ୍ଷୁଧାକୁ ନିବାରଣ କରିବା ପାଇଁ ଯଦି କେହି ଟୋକା ଆଗେଇ ଆସନ୍ତି, ତାକୁ ଧର୍ଷଣ କହିବା କେତେଦୂର ଯୁକ୍ତି ଯୁକ୍ତ ।

ଖବରକାଗଜ ବାଲାଙ୍କର କୌଣସି କାର୍ଯ୍ୟ ନ ଥିବା ହେତୁ, ସେମାନେ ବାରମ୍ବାର ଏହିପରି ଗୁଡ଼ାଏ କଥା ଲେଖୁଛନ୍ତି । ଭଲ ସହିତ ଟିକିଏ ମନ୍ଦ ନ ରହିଲେ କେମିତି ହେବ । ଖାଣ୍ଟି ସୁନାରେ କ'ଣ ଗହଣା ତିଆରି କରି ହୁଏ । ତଥାପି ମୁଖ୍ୟମନ୍ତ୍ରୀ କୌଣସି-ଠାରେ କିଛି ଅପ୍ରିତାକର ଘଟଣା ଘଟିବା ମାତ୍ରେ କମିଶନ୍ ବସାଉଛନ୍ତି ।

ସରକାରଙ୍କ କଥା ଓ ପଞ୍ଚବର୍ଷିନଙ୍କ ବିଷୟରେ ଭାବୁଥିଲେ ମନ୍ତ୍ରୀ ସରବରାକାର ସବୁଯାକ ଦୁର୍ନୀତି ସେ ନିଜେ କରିଛନ୍ତି । ତାଙ୍କର ପ୍ରତ୍ୟେକ ରାଜ୍ୟର ରାଜଧାନୀରେ କୋଠାମାନ ଗଢ଼ା ହୋଇଛି । ପୁଅ ଝିଅଙ୍କଠାରୁ ବନ୍ଧୁ ବାନ୍ଧବ ପର୍ଯ୍ୟନ୍ତ ସମସ୍ତଙ୍କୁ ଚାକିରୀ ଓ ବ୍ୟବସାୟ କ୍ଷେତ୍ରରେ ଲଗାଇ ଦେଇଛନ୍ତି । ବ୍ୟାଙ୍କ ବାଲାନ୍ସ ଏତେ ବଢ଼ିଗଲାଣି ଯେ ଦଶପୁରୁଷ କେବଳ ବସି ଖାଇଲେ ସରିବନି । ପୂର୍ବନ୍ନୀକ ହୋଇ କେତେଦିନ ବଞ୍ଚିଥିଲେ । ବଡ଼ କଷ୍ଟ ଲାଗିଥିଲା ତାଙ୍କୁ । ସେଥିପାଇଁ କେତେବେଳେ କେମିତି କିଏ ତାଙ୍କ ପାଖକୁ ଚାଲିଆସେ । ସବୁ ଦୋଷ ରାଜା ମୁଣ୍ଡରେ ପିବା ପରି ମୁଖ୍ୟମନ୍ତ୍ରୀଙ୍କ ମୁଣ୍ଡରେ ଯାଉଛି । ସରବରାକାର ଜାଣିଶୁଣି ଏପରି କରନ୍ତି । ପ୍ରତ୍ୟେକ ମନ୍ତ୍ରୀମଣ୍ଡଳରେ ସେ ଅତ୍ୟନ୍ତ

ଇମ୍ପ୍ଲାଣ୍ଟ ଡିପାର୍ଟମେଣ୍ଟ ନେଇ ନିଜର ସଚ୍ଚୋଟପଣିଆର ଡିଣ୍ଡିମ ପୁଣିଥରେ ପିଟିବାବେଳେ ମୁଖ୍ୟମନ୍ତ୍ରୀ ଓ ଦଳକୁ ବଦନାମ କରି ନିର୍ବାଚନ ପୂର୍ବରୁ ସରକାରରୁ ଭାଙ୍ଗି ନିଜେ ଅନ୍ୟଦଳରେ ଯୋଗ ଦେଇଥାନ୍ତି । ଏଥରକ କିନ୍ତୁ ତାଙ୍କ ଦଳ ପଡ଼ିଲେଣି ଜଣେ, ଦୁଇଜଣ । ସେମାନେ ନିଶ୍ଚିନ୍ତ ହେଲେଣି ଏଥରକ ମନ୍ତ୍ରୀମଣ୍ଡଳ କୌଣସି ଉପାୟରେ ରହି ପାରୁନି ଏବଂ ସରକାରୀଦଳରେ ରହିଲେ ପରାଜୟ ସୁନିଶ୍ଚିତ ।

ମୁଖ୍ୟମନ୍ତ୍ରୀଙ୍କ ସାମନା ଚୌକିରେ ବସି ଭାବୁଥିଲେ ମିଷ୍ଟର ସରବରାକାର । ମୁଖ୍ୟମନ୍ତ୍ରୀଙ୍କ ମନୋଭାବ ବୁଝିବାକୁ ଆସିଥିଲେ । ମୁହଁରେ କିନ୍ତୁ ତାଙ୍କର ଦୁଃଖର କୌଣସି ଚିହ୍ନବର୍ଣ୍ଣ ଦେଖାଯାଉନି ବରଂ ନିର୍ଲିପ୍ତଭାବରେ ଫାଇଲ୍ ପରେ ଫାଇଲ ପଢ଼ି ଚାଲିଛନ୍ତି । କିଛି କହୁ ନାହାନ୍ତି ତାଙ୍କୁ । ଅତିଷ୍ଠ ହୋଇ ପଡ଼ୁଥିଲେ ସେ । ବିହାରର ମାରୁଓ୍ୱାଡ଼ି ବ୍ୟବସାୟୀ ବୋଧ ହୁଏ ଆସି ପହଞ୍ଚି ଯିବଣି । ସିଏ ମହାଶୟ ପୂରାଦମରେ କାମରେ ଲାଗି ଯାଇଥିବେ ଟ୍ରାନ୍ସଫର ଓ ପୋଷ୍ଟିଂ ଶେଷ କରିବାକୁ । ବିରୋଧିଦଳ ନେତାଙ୍କ ସହିତ ଗୁପ୍ତ ଦେଖାସାକ୍ଷାତର ସମସ୍ତ ଚୂଡ଼ାନ୍ତ ହୋଇ ଯାଇଥିବା ଖବର ତାଙ୍କ ନିକଟକୁ ଚାଲିଯାଇଛି । ଏଥରକ ସେ ନିଶ୍ଚିତ ମୁଖ୍ୟମନ୍ତ୍ରୀ ପାଇଁ ପ୍ରାର୍ଥୀ ହେବେ । ସବୁ ଯୋଗାଡ଼କରି ସାରିଲେଣି । କେବଳ ରାଜ୍ୟର ଏହି ସର୍ବୋଚ୍ଚ ଚୌକିରେ ବସିବାର ବାକି ରହିଲା । ଏଥରକ କିନ୍ତୁ ଏହି ଚୌକିରେ ବସିବେ । ଦୁଇ ଚାରିବର୍ଷ ମୁଖ୍ୟମନ୍ତ୍ରୀ ରହିଗଲେ ଯାହା ଯାହା ବାକି ଅଛି, ସେ କାର୍ଯ୍ୟସବୁ ସମ୍ପନ୍ନ ହୋଇଯିବ ।

ପୁଣି ଭାବନାରେ ମଜ୍ଜିଗଲେ ସରବରାକାର । ତାଙ୍କ ମନରେ ଅନେକ ସ୍ୱପ୍ନ । ସେ ନିଜର ଉପସ୍ଥିତି ସମ୍ପୂର୍ଣ୍ଣ ଭୁଲିଗଲେ । ଏୟାରକଣ୍ଡିସନ୍‌ରୁମ୍‌ର ଚୌକିରେ ମୁଖ୍ୟମନ୍ତ୍ରୀଙ୍କ ସାମନାରେ ବସି କେତେବେଳେ ଶୋଇ ପଡ଼ିଥିଲେ ସେ । ଅନେକ ବେଳପରେ ମୁଖ୍ୟମନ୍ତ୍ରୀ ତାଙ୍କୁ ଉଠାଇ ଦେଇ ନିଜସାଙ୍ଗରେ ଯିବାକୁ ନିର୍ଦ୍ଦେଶ ଦେଲେ । ରାତି ବେଶି ହୋଇ ଯାଇଥିଲା । ତାଙ୍କ ସରକାରୀ ବାସଭବନରେ ଛାଡ଼ିଦେଇ ମୁଖ୍ୟମନ୍ତ୍ରୀଙ୍କ ଗାଡ଼ି ଦ୍ରୁତଗତିରେ ଚାଲି ଯାଇଥିଲା । ରାସ୍ତାରେ ଚାରି ପାଞ୍ଚୋଟି ସି: ଆର: ପି: ଜଓ୍ୱାନ୍ ଏପାଖ ସେପାଖ ବୁଲୁଥିବାର ସେ ଲକ୍ଷ୍ୟ କରିଥିଲେ ।

ମିଷ୍ଟର ସରବରାକାର ନିଶ୍ଚିନ୍ତମନରେ ଶୋଇ ପଡ଼ିଥିଲେ ତାଙ୍କର ବାସଭବନରେ । ସେ ଅନ୍ୟ କୌଣସି କାର୍ଯ୍ୟ କରିବାକୁ ସମୟ ପାଇ ନଥିଲେ । ଉଠିବାବେଳକୁ ପାଞ୍ଚଟା ବାଜି ସାରିଥିଲା । ଘଣ୍ଟାକୁ ଦେଖି ଚମକି ପଡ଼ିଲେ ସେ ।

ଅନେକ ଡେରି ହୋଇଗଲାଣି । ଗତ ରାତିରେ ମୁଖ୍ୟମନ୍ତ୍ରୀଙ୍କ ସହିତ ଲସି ପିଇବା ପରେ, ସେ ହଠାତ୍ ଶୋଇ ପଡ଼ିଥିଲେ । ତାଙ୍କର ଆଉକିଛି ମନରେ ପଡ଼ୁ ନଥିଲା । ଦଳବଦଳ ନ କଲେ ମନ୍ତ୍ରୀତ୍ୱ ଚାଲି ଯାଇପାରେ । ସରକାରରେ ଥାଇ ଭୋଗ କରୁଥିବା

ଗାଡ଼ି ଓ ଘର ଆଉ ମିଳି ନପାରେ । ନଜର ଯେତେ ଥିଲେ ମଧ୍ୟ ଫୁଲମାଳ ପାଇବାର କେତେ ଲୋଭ । ସମସ୍ତେ ସାର୍, ସାର୍ କହି ପଛରେ ଗୋଡ଼ାଇବାରେ କେତେ ଗର୍ବ । ଏହିକଥା ଭାବି ସେ ତତ୍‌କ୍ଷଣାତ୍ ବାଥରୁମ୍ ଭିତରକୁ ପଶିଯାଇ ନିତ୍ୟକର୍ମ ସାରିବାକୁ ଲାଗିଲେ । ଏବେବି ସମସ୍ତ ହାତରେ ଅଛି । ଦୁଇଘଣ୍ଟା ଭିତରେ ସବୁ କିଛି ଓଲଟପାଲଟ ହୋଇ ଯାଇପାରେ । ବିରୋଧିଦଳ ହୁଏତ ଏପର୍ଯ୍ୟନ୍ତ ମନ୍ତ୍ରୀମଣ୍ଡଳର ତାଲିକା ସ୍ଥିରକରି ନଥିବେ । ବାଥ୍‌ରୁମର ସାଓ୍ୱାର ପାଣି ତାଙ୍କୁ ଖୁବ ମିଠା ମିଠା ଲାଗୁଥିଲା । ପେଟଟା ଅଧିମାତ୍ରାରେ ବୃଦ୍ଧି ପାଇଥିବା ହେତୁ, ସେ ନିଜକୁ ସମ୍ଭାଳି ପାରୁ ନଥିଲେ । ଓଦା ସର୍‌ସର୍ ହୋଇ ଠାକୁର ଘର ଭିତରକୁ ପଶିଯାଇ ଗୀତା, ହନୁମାନ ଚାଳିଶା ଇତ୍ୟାଦିକୁ ବହୁତ ଜୋରରେ ପଢ଼ିବାକୁ ଲାଗିଗଲେ । ରାଜ୍ୟସାରା ଯେତେ ବାବାଜୀ ଓ ପଣ୍ଡିତମାନଙ୍କ ଠାରୁ ସେ ନାନାଦି ତେଣ୍ଟିଆ ଓ ମାଳାଆଣି ପାଖରେ ରଖିଛନ୍ତି ସେ ସବୁ ହିଁ ତାଙ୍କର କାର୍ଯ୍ୟରେ ଆସୁଛି । ଭଗବତ୍ କୃପା ନ ହେଲେ କାର୍ଯ୍ୟରେ ସିଦ୍ଧି ହୁଏନି । ସମତାରକ ମନ୍ତ୍ରକୁ ସେଥିପାଇଁ ସେ ଘୋଷି ଦେଇଛନ୍ତି । ତାଙ୍କର ବାପା ପ୍ରତ୍ୟେକ ଦିନ ଠାକୁର ଘରେ ଅତ୍ୟନ୍ତପକ୍ଷେ ତିନିଚାରିଘଣ୍ଟା କଟାଉଥିଲେ । ଜୀବନକୁ ଆଦର୍ଶମାର୍ଗରେ ଗଢ଼ିବାକୁ ଉପଦେଶ ଦେଉଥିଲେ । ସ୍ୱାଧିନତା ସଂଗ୍ରାମରେ ଯୋଗଦେଇ ସେ ଯାହାସବୁ ଆୟ କରିଥିଲେ, ତାକୁ କଂଗ୍ରେସକୁ ଦେଇ ଦେଇ ଏକ ନିଷ୍ପାପର ଜୀବନ ବିତାଇଥିଲେ । ତାଙ୍କର ସନ୍ତାନ ସେ । ପିତାଙ୍କର ଅନ୍ୟ କୌଣସି ଗୁଣକୁ ପାଇଥାନ୍ତୁ ବା ନଥାନ୍ତୁ, ପୂଜାକଲାବେଳେ ବାପାଙ୍କ କଥା ଟିକିଏ ମନେ ପଡ଼ିଯାଏ । ନିତ୍ୟକର୍ମ ସରି ଯାଇଥିଲା । ବେକରେ ରୁଦ୍ରାକ୍ଷ ଓ ତୁଳସୀମାଳାକୁ ପକାଇ ଦେଇ ଡ୍ରେସିଂ ଟେବୁଲ ପାଖରେ ବସି ନୂଆକରି ତିଆରି କରିଥିବା ଜ୍ୟାକେଟକୁ ଗଳାଇ ଦେଇ ଗୋଲାପ ଫୁଲଟେ ତହିଁରେ ମଡ଼ାଇ ଦେଲେ । ଦାମିକିଆ କଲମଟାକୁ ଖୋସି ଦେଲେ ପକେଟ୍‌ରେ । ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେବାବେଳେ ଏଇ କଲମରେ ଏଥରକ ଦସ୍ତଖତ କରିବେ । କଲେଜରେ ପଢ଼ିବାବେଳେ ଦସ୍ତଖତ କରିବାକୁ ସେ କେତେଦିନ ଧରି ପ୍ରାକ୍‌ଟିସ୍ କରିଛନ୍ତି । ତାଙ୍କର ଦସ୍ତଖତ ସବୁଠାରୁ ସୁନ୍ଦର ବୋଲି ମୁଖ୍ୟମନ୍ତ୍ରୀ ସେ ଦିନ ତାଙ୍କୁ କହୁଥିଲେ । ମନ୍ତ୍ରୀ ହେବାଦିନଠାରୁ ଯାହା ଯାହା ମନ୍ତ୍ରୀତ୍ୱ ରଖିବା ପାଇଁ ଆବଶ୍ୟକ, ସେ ସବୁ କିଛି ସମସ୍ତକମେ ଶିଖି ଯାଇଛନ୍ତି ।

ଘଣ୍ଟାରେ ସାତଟା ବାଜିଲାଣି । ଗାଡ଼ି ବାହାର କରିବାକୁ ନିର୍ଦ୍ଦେଶ ହେଲେ । ରେଡ଼ିଓଟାକୁ ଖୋଲି ଦେଲେ । ଆଞ୍ଚଳିକ ସମ୍ବାଦ ଶୁଣିସାରି ବାହାରି ଯିବେ ସେ । ରାଜ୍ୟର ଖବର କଥା ପ୍ରାୟ ରେଡ଼ିଓରେ ସେ ସବୁଦିନ ଶୁଣିଥାନ୍ତି ।

ଆକାଶବାଣୀରୁ ଭାସି ଆସୁଥିଲା ସମ୍ବାଦ । ସେହି ସମ୍ବାଦଟିକୁ ଶୁଣି ସେ ହଠାତ୍ ଚମକି ଉଠିଲେ । ସମ୍ବାଦଟି ଥିଲା ଏହିପରି, "ଆଜି ଭୋର ଛଅଟା ବେଳେ ବିରୋଧିଦଳର

ନେତାଙ୍କ ସହିତ ପନ୍ଦର ଜଣ  ସରକାରୀ ଦଳରେ ଯୋଗ ଦେଇଛନ୍ତି ଓ ବିରୋଧିଦଳର କୋଡ଼ିଏ ଜଣ ଏମ୍ ଏଲ୍ ଏଙ୍କୁ ପୋଲିସ୍ 'ମିଶା'ରେ ଆରେଷ୍ଟ୍ କରି ନେଇଛି । ସେମାନେ ଗ୍ରୁପ ଆନ୍ଦୋଳନ  ସମୟରେ ନାନାଦି  ଜଳାପୋଡ଼ା ଓ ଭଙ୍ଗାରୁଜା କାର୍ଯ୍ୟକୁ ଉତ୍ସାହିତ କରିଥିଲେ ।" ଅନ୍ୟ  ସମ୍ବାଦଟି  ଶୁଣିବା ମାତ୍ରେ  ମିଷ୍ଟର  ସରବସ୍ୱକାରଙ୍କର  ହୋସ ଉଡ଼ିଯାଇଥିଲା । "ମୁଖ୍ୟମନ୍ତ୍ରୀ  ମିଷ୍ଟର ପଣ୍ଟବର୍ଦ୍ଧନ ରାଜ୍ୟପାଳଙ୍କୁ ପରାମର୍ଶ  ଦେଇ ତାଙ୍କ ମନ୍ତ୍ରୀମଣ୍ଡଳର  ସଂପ୍ରସାରଣ କରିଛନ୍ତି । ଏହି ସଂପ୍ରସାରଣ  ସମୟରେ କ୍ୟାବିନେଟ ମନ୍ତ୍ରୀ ମିଷ୍ଟର ସରବସ୍ୱକାର  ମନ୍ତ୍ରୀମଣ୍ଡଳରୁ  ବାଦ ପଡ଼ିଯାଇଛନ୍ତି ଓ ତାଙ୍କ ସ୍ଥାନରେ ସରକାରୀ ଦଳରେ ଯୋଗ ଦେଇଥିବା ବିରୋଧିଦଳ ନେତାଙ୍କୁ କ୍ୟାବିନେଟ୍ ମନ୍ତ୍ରୀଭାବେ ନିଆଯାଇଛି । ଆଜି ସକାଳ ଘ ୭ । ୧୫ ମିନିଟ୍  ସମୟରେ  ନୂତନ ମନ୍ତ୍ରୀମାନେ ରାଜଭବନରେ  ଶପଥ ନେବେ ।"

ମିଷ୍ଟର ସରବସ୍ୱକାର ତଳେ ପଡ଼ି ବିକଳରେ  କାନ୍ଦୁଥିଲେ । ଦାମିକିଆ କଲମଟି କାଳି ବାହାରି ତାଙ୍କର ଜ୍ୟାକେଟ୍‌ଟିକୁ ପୁରାପୁରି କଳାକରି ଦେଇଥିଲା ।



# ସାପ୍ତାହିକୀ

ମୁଁ ସୁବ୍ରତ ଚୌଧୁରୀ, ଇନ୍ଦ୍ର ବାଣିଜ୍ୟିକ ଶାଖା କାର୍ଯ୍ୟାଳୟରେ ଜଣେ କର୍ମଚାରୀ । ଏହି କାର୍ଯ୍ୟାଳୟର ଭାରତ ବିଭିନ୍ନ ସ୍ଥାନରେ ଶାଖା, ମଣ୍ଡଳ ଓ ଅଞ୍ଚଳ କାର୍ଯ୍ୟାଳୟମାନ ରହିଛି । ମୁଁ ସବୁବେଳେ କାର୍ଯ୍ୟବ୍ୟସ୍ତ, ମୋର ବନ୍ଧୁମାନଙ୍କୁ ନେଇ । ମୋ କାର୍ଯ୍ୟର ଏକ ସପ୍ତାହର ବିବରଣୀ ଆପଣମାନଙ୍କ ଆଗରେ ଉପସ୍ଥାପିତ କରୁଛି ।

## ରବିବାର—

ସକାଳୁ ସକାଳୁ ପତ୍ନୀଙ୍କର ତାଗିଦା ମାର୍କେଟରୁ ଯାଇ ମାଛ ଆଣିବାକୁ । ଚା କପେ ପିଇବା ମୋର ନିତ୍ୟ ନୈମିତ୍ତିକ ଅଭ୍ୟାସ । ଶେଯରୁ ଉଠି ମାତ୍ର ପତ୍ନୀ ଗାଧୋଇ ନଥିବାରୁ ଚା' ନ ଦେଇ ତରବର ଲଗାଇଛନ୍ତି ମାଛ ଆଣିବାକୁ । ଆଠଟା ବାଜିଲାଣି । ମାର୍କେଟ୍‌ରୁ ମାଛ ସରିଯିବ । 'କହ୍ନୋ ! ଆଜି ତ ଛୁଟି, ଏତେ ତରବର କାହିଁକି । ଟିକିଏ ଧିରେ ସୁସ୍ଥେ ଉଠିବାକୁ ଦିଅ । କିଏ ଶୁଣୁଛି କା' କଥା । ଘର ଭିତରେ ପତ୍ନୀ ସର୍ବେସର୍ବା । ତାଙ୍କୁ କହିବାକୁ ସାହାସ ବା କେଉଁ ପୁରୁଷର ଅଛି ।' ମନେ ମନେ ଏଗୁଡ଼ିକ ଭାବୁଥିଲେ ବି ଗତକାଲିର ଖବର କାଗଜ ଉପରେ ଆଖି ଲାଗିଥିଲି । ହକର୍ ମଧ୍ୟ ଏ ପର୍ଯ୍ୟନ୍ତ କାଗଜ ଆଣି ଦେଇନି । ବିଳମ୍ବରେ ହେଲେ ମଧ୍ୟ ଚା' କପଟିକୁ ଶୂନ୍ୟ କରି ବାହାରିଗଲି ମାଛ କିଣିବାକୁ । ମାଛ ଝାଲେଇକୁ ଘାଣ୍ଟି ଚକଟି ଲୋକମାନେ ଗୋଟେ ଗୋଟେ ଟେକି ନେଇ ଯାଉଥିଲେ, ମୁଁ ଚାହିଁ ବସି ରହିଥିଲି । ମାଛବାଲା ଚିହ୍ନାଲୋକ । ତାକୁ ଗୋଟେ ବଡ଼ମାଛ ରଖିବାକୁ କହି, ପାନ ଖଣ୍ଡେ ଖାଇବା ଉଦ୍ଦେଶ୍ୟରେ ଆଗେଇ ଗଲି ।

ମଝିରୁ ବଡ଼ ପାଟିରେ କାହାର ଡାକ । 'ହେ ସୁବ୍ରତବାବୁ, ସୁବ୍ରତବାବୁ ।' ମୁହଁ ବୁଲାଇ ଚାହିଁଲି । ପରିଚିତ ସ୍ୱର । ପୁଲସ୍ତ୍ୟଙ୍କର । ତାଙ୍କର ପୁରାନାମ ଶ୍ରୀ ପୁଲସ୍ତ୍ୟ କରିତ୍କର୍ମୀ । ସମସ୍ତେ ପୁଲସ୍ତ୍ୟ ବୋଲି ଡାକନ୍ତି ।

ଆଜି କି ଦିନ କେଜାଣି । ସକାଳୁ ଚା ପିଇବାକୁ ଡେରି । ତା ପରେ ଏ ଲୋକ ମାଙ୍ଗରେ ଦେଖା ।' ରବିବାର ଦିନଟା ବେକାର ହୋଇଗଲା ଭାବି ସେଇଠି ଛୁଡ଼ା ହୋଇ ପଡ଼ିଲି । ପୁଲସ୍ତ୍ୟ ମହାଶୟ ଧ୍ରୁବତାରା ମଣ୍ଡଳ କାର୍ଯ୍ୟାଳୟର ଜଣେ ବିଶିଷ୍ଟ ସଦସ୍ୟ । ତାଙ୍କ କଲମ ନ ଚାଲିଲେ କାର୍ଯ୍ୟାଳୟର କିଛି ହୁଏନି ଓ ଧ୍ରୁବତାରାଙ୍କର ତାଙ୍କ ଉପରେ ଈଶ୍ୱର ବିଶ୍ୱାସ ଅଛି ବୋଲି ସେ ସବୁବେଳେ ଅନ୍ୟମାନଙ୍କୁ କହିଥାନ୍ତି । ଦେଖା ଯେତେବେଳେ ହୋଇଗଲା, କଥା ନ କହିଲେ ଚଳୁନ୍ଥି କେନେନେ ।

'ବୁଝିଲି ସୁବ୍ରତ ବାବୁ; ଆଜ୍ଞା ଅଫିସ୍‌ରେ ମଣିଷ କାମ କଲାପରେ, ଖଟି ଖଟି ନସ୍ୟାନ୍ତ ହେଲାଣି, ତଥାପି କ'ଣ ଧ୍ରୁବତାରାଙ୍କର ମନକୁ ପାଉଛି । ତା ସାଙ୍ଗକୁ ତାଙ୍କର ସେଇ ଗ୍ରହମଲ୍ଲ ଅଜି ବରଦାନର ଜନ୍ମହିଁ ଏକା । ସବୁକଥା ନେଇ ଫୋଡ଼ି ଦେଉଛି । ମୋର କେନେ ଯୁବକସ୍ୱର, ମାଜ ମହାଦେବଙ୍କ ସାପ, ଜିଏ କହିବ ।'

'କ'ଣ ଆଜି ଘଟିଛି କି ? ଆପଣଙ୍କ ପରି ଭଦ୍ର ଲୋକଙ୍କୁ ଅପମାନ । ବାସ୍ତବିକ ଅସହ୍ୟ ।' 'ସେ କଥା କ'ଣ ଆଉ କହିବି । ଆମେ ତ ସାଙ୍ଗ ହୋଇ କାମ କରୁଛେ । ମୁଁ କ'ଣ ନକରେ କୁହନ୍ତୁ ତ ! ଟିକିଏ କିଛି ନ ହେଲେ ଖାଲି ଗର୍ଜନ ଏବଂ ବିଦ୍ରୁପ, କେତେ ସହିବି । ରକ୍ତ ମାଂସ ଦେହଧରି ଏ ଗୁଡ଼ାକ କ'ଣ ସହି ହୁଏ । ତା ରୁମ୍ ଭିତରେ ତ ପିଅନ ଠାରୁ ଅଧିକ ଖରାପ ବ୍ୟବହାର କରୁଛି । ସୁଇଚ୍ ଟିପିବା ଠାରୁ ଆରମ୍ଭ କରି, ଡ୍ରୟାର ଖୋଲିବା ପର୍ଯ୍ୟନ୍ତ ସବୁ କାମ କରି ଶେଷକୁ ତା ଘରେ ମଧ୍ୟ ସକାଳୁ ସନ୍ଧ୍ୟା ଯାଏ ଅଧିଆ ପଡ଼ି, ଫଳ ତ ଦେଖୁଛନ୍ତି ।'

'ଗତକାଲି ନୂଆ ବସାଘରକୁ ଗଲେ । ପଇସାଟିଏ ଖର୍ଚ୍ଚ କରିବେନି । ଯେତେକ ଜିନିଷ-ଡ୍ରେସିଂ ଟେବୁଲଠାରୁ ଆରମ୍ଭ କରି ଟିଭି ସେଟ୍ ପର୍ଯ୍ୟନ୍ତ ବୋହିବାକୁ ହେଲା । ମୁଁ କ'ଣ ଏକା । ଅଜି ବରଦାନର ତ ପ୍ରଥମେ ଆଗଭର । ସେ ଘର ବଦଳାଇବା କଥା କହୁଛି କି ନାହିଁ ଅଜି କହିଲା, 'ସାର୍ ! କାହାକୁ କାହିଁକି ଡାକିବେ, ମୁଁ ସକାଳୁ ଚାଲି ଆସିବି । ଦାମିକିଆ ଜିନିଷ ଗୁଡ଼ାକ ନିଜେ ନ ଦେଖିଲେ···।' ମୋର ଆଉ କ'ଣ ଚାରା ଥିଲା । ବାଧ୍ୟ ହୋଇ ଗତ କାଲି ସକାଳୁ ଯାଇ ସନ୍ଧ୍ୟାରେ ଫେରିଲି ।'

କହିବାବେଳେ ଯେମିତି ଅବୋଧ ଶିଶୁଟିଏ, କିଛି ଜାଣି ନାହାନ୍ତି । ଉଚ୍ଚତର ସୋପାନକୁ ଉଠିବା ପାଇଁ ବ୍ୟସ୍ତ । ଉପରକୁ ଉଠିବାକୁ ହେଲେ ବଡ଼ ବଡ଼ଙ୍କୁ ଟିକିଏ ଖୋସାମତ, ତେଲ ମାଲିସ୍ କରିବାକୁ ହୁଏ । ତା ଛଡ଼ା ଧ୍ରୁବତାରା ବାହାର ଲୋକ । ଆପଣ ତାଙ୍କୁ ନିଜର ବି କରି ନେଲେଣି । ତାଙ୍କ ଭାଷା ମଧ୍ୟ କହି ପାରୁଛନ୍ତି । ସବୁ

ଭାଷାରେ ହେଉ ଆପଣଙ୍କୁ ଆଉ ଅସୁବିଧା କ'ଣ ! ମୁଁ କହିଲି । ଆପଣ କାହିଁକି ଅଯଥା ଆସିଲେ, ମୁଁ ମାଛ ନେଇ ଯିବାକୁ ଚାହୁଁଥିଲି ।' ପୁଲସ୍ତ୍ୟଙ୍କର କହିବାରୁ ମୁ ମୁହଁ ବୁଲାଇ ଚାହିଁବା ବେଳକୁ ଧ୍ରୁବତାରା ସ୍ୱୟଂ ହସି ହସି ବିରାଜମାନ କରୁଛନ୍ତି । ସାଙ୍ଗରେ ଅଛି ବରଦାକର ଓ ଅର୍ଚ୍ଚି ମୁଖୋପାଧ୍ୟାୟ ।

'କ'ଣ ସୁବ୍ରତ ! ପୁଲସ୍ତ୍ୟଙ୍କ ସହ କ'ଣ କଥାବାର୍ତ୍ତା ଚାଲିଛି ।' ପଚାରିଲେ ସେ । ମୁଁ କିଛି କହିବା ପୂର୍ବରୁ ପୁଲସ୍ତ୍ୟ କହିବାକୁ ଆରମ୍ଭ କରିଦେଲେ, 'ସାର୍ ! ସେ ଆପଣଙ୍କ କଥା ପଚାରୁଥିଲେ ଏବଂ କେବଳ ଆପଣଙ୍କ ପ୍ରଶଂସା । ଧ୍ରୁବତାରା ନଥିଲେ ମଣ୍ଡଳ କାର୍ଯ୍ୟାଳୟର କିଛି ଉନ୍ନତି ହୁଅନ୍ତା ନାହିଁ ବୋଲି ଆମେ ଆଲୋଚନା କରୁଥିଲୁ । ଏବଂ ଆପଣଙ୍କର ଗତକାଲି ଘର ସିଫ୍ଟିଂ କରିବା ଏବଂ ନୂଆ ଘରର ସାଜସଜ୍ଜା ତାଙ୍କୁ କହିଲି । ମୁଁ କେବଳ ମୁଣ୍ଡ ହଲାଇ ଆଗରେ ଛିଡ଼ା ହୋଇଥିବା ଗୁରୁଜଣ ବିଶିଷ୍ଟ ପଦାଧିକାରୀମାନଙ୍କ ମୁହଁକୁ ଅନାଉଥିଲି । ଏବଂ ଅଯଥା ଅଧିକ ସମୟ ନଷ୍ଟ କରିବାକୁ ଇଚ୍ଛାକରି, ବିଦାୟ ଜଣାଇ ମାଛଧରି ଫେରିଥିଲି ।

\+ \+ \+

## ସୋମବାର

ଦଶଟା ବେଳେ ଅଫିସ୍‌ରେ ପହଞ୍ଚି ଦେଖିବା ବେଳକୁ ଶାଖା କାର୍ଯ୍ୟାଳୟର ତତ୍ତ୍ୱାବଧାରକ ତାଙ୍କ କୋଠରୀରେ ବସି ସିଗାରେଟ୍ ଫୁଙ୍କିବାରେ ବ୍ୟସ୍ତ । 'ଗୁଡ୍‌ମର୍ଣ୍ଣିଂ' କହି ପଶିଗଲି ଭିତରକୁ । କିଛି ହସ ହସ ମୁହଁରେ କିଛିଟା ଗାମ୍ଭୀର୍ଯ୍ୟ ଫୁଟାଇ ସେ କହିଲେ, 'ସୁବ୍ରତ ! ମୁଁ ତୁମକୁ କେତେବେଳୁ ଖୋଜୁଥିଲି । କଥା କ'ଣ କି ମଣ୍ଡଳ କାର୍ଯ୍ୟାଳୟରୁ ଧ୍ରୁବତାରାଙ୍କ ନିର୍ଦ୍ଦେଶ, ତୁମକୁ ବର୍ତ୍ତମାନ ସେଠାକୁ ଯିବାକୁ ହେବ । ବିଳମ୍ବ ନ କରି, ଯଥା ଶୀଘ୍ର ଯାଇ ଦେଖାକର ନଚେତ୍ ମୋତେ କହିବେ ମୋର ସୁବ୍ରତଙ୍କ ଉପରେ କୌଣସି ଅଙ୍କୁଶ ନାହିଁ ।

ମୁଁ ମଣ୍ଡଳ କାର୍ଯ୍ୟାଳୟରେ ପହଞ୍ଚି ସିଧା ପଶିଗଲି ଶୀତତାପ ନିୟନ୍ତ୍ରିତ କୋଠରୀରେ । ଧ୍ରୁବତାରା ବସିଛନ୍ତି ଏବଂ ଶରୁ ଓ ପୁଲହ ଛିଡ଼ା ହୋଇଛନ୍ତି । ସ୍ୱଭାବ ବଶତଃ ପୁଲହ ଗୋଟିଏ ଜାଗାରେ ସ୍ଥିର ହୋଇ ରହିପାରୁ ନାହାନ୍ତି । ପୁଲହ କର୍ମଚାରୀ ଓ ଶରୁ ପରାଶରକର ଦୁହେଁ ମଣ୍ଡଳ କାର୍ଯ୍ୟାଳୟର ବରିଷ୍ଠ ଅଧିକାରୀ । 'ସାର୍; ଏଇଟା ବହୁତ ଇମ୍ପୋର୍ଟାଣ୍ଟ ଲେଟର ।'

'ଓଲଟ ପାଲଟ କରି ଦେଖି ସାରିବା ପରେ ଧ୍ରୁବତାରା ବିରକ୍ତ ସ୍ୱରରେ କହିଲେ, 'ମୁଁ ଲେଗଛି' ମୋ ସହିତ ଆଲୋଚନା କର, ମାତ୍ର ଚିଠିଧରି ହାଜର ।

କେତେ ଦିନ ଗଲେ ଶିଖିବ ।' 'ସାର୍, କଥା କ'ଣ କି ଆପଣଙ୍କ କହିବା ଅନୁଯାୟୀ ମୁଁ ଟେଲିଫୋନ୍‌ରେ ତାଙ୍କୁ କହିଥିଲି ।'

'କ'ଣ କହିଥିଲ; କହିବତ ।'

'ଟିକିଏ ଝରକାଟିକୁ ଖୋଲିଦିଅ ପ୍ରଥମେ ।'

ପଣ୍ଡିଶକର ! କଟକକୁ ଟେଲିଫୋନ୍ କରି ସେହି ଖବରଟିକୁ ଜଣାଅ ।' ସେତେବେଳକୁ କର୍ମକାର ଆରମ୍ଭ କରି ଦେଇଥିଲେ ତାଙ୍କ ଭାଷଣ ଏବଂ ପଣ୍ଡିଶକର ଟେଲିଫୋନ୍‌ର ଡାଏଲ୍‌କୁ ଘୂରାଉଥିଲେ ।

'ହ୍ୟାଲୋ; ହଁ କଟକ···କଟକ·· କଟକ, ମୁଁ ପଣ୍ଡିଶକର·· ମଣ୍ଡଳ କାର୍ଯ୍ୟାଳୟ · ପଣ୍ଡିଶକର·· ମଣ୍ଡଳ କାର୍ଯ୍ୟାଳୟ···ତୁମର ମାଷ୍ଟ୍ର···ମାଷ୍ଟ୍ର ।

'ଟେଲିଫୋନ୍‌ରେ କଥା କହି ଶିଖିଲନି ।' ବିରକ୍ତ ହୋଇ ଧୃବତାରା ନିର୍ଦ୍ଦେଶ ଦେଲେ କର୍ମକାରଙ୍କୁ ବାର୍ତ୍ତା ଦେବାକୁ । ପଣ୍ଡିଶକର ବାହାରି ଯାଇଥିଲେ ନିଜର ସିଟ୍ ଆଡ଼େ ।

କର୍ମକାର ଟେଲିଫୋନ୍‌ରେ ଭଲଭାବରେ ବାର୍ତ୍ତା ଦେଇଥିବା ହେତୁ ଉତ୍‌ଫୁଲ୍ଲିତ ହୋଇ କହିବାକୁ ଆରମ୍ଭ କଲେ 'ସାର୍ ! ଆପଣ ଯାହା ଯାହା କହିଥିଲେ·····ସେ ନାହାନ୍ତି ।'

'ବର୍ତ୍ତମାନ ଆଲୋଚନାରେ ବ୍ୟସ୍ତ ।' ଇତ୍ୟାଦି କହି ଦେଇଛୁ । 'ସାର୍, ଆପଣ ସେଦିନ ମିଟିଙ୍ଗରେ ବାଲୁ କରିଦେଲେ । କି ଆର୍ଗୁମେଣ୍ଟ !

ଆପଣଙ୍କ ରୁମ୍‌ର ଡେକୋରେସନ ଦେଖି ଡାଇରେକ୍ଟର ମିଶ୍ରବାବୁ ମୋତେ ଦେଖି କହିଲେ, "ମିଷ୍ଟର କର୍ମକାର ମିଷ୍ଟର ଧୃବତାରାଙ୍କ ଟେଷ୍ଟ ଭାରି ଉଚ୍ଚ ଧରଣର । ତାଙ୍କ ରୁମ୍ ଡେକୋରେସନରୁ ଜଣାପଡ଼ୁଛି ।" ମୁଁ ତାଙ୍କୁ ଆପଣଙ୍କ କଥା କହିଲି ।

"ଏତେ କଥା ତେବେ ମିଷ୍ଟର ମିଶ୍ର ପଚାରୁଥିଲେ । ତୁମେ ସୁବ୍ରତଙ୍କୁ ବାଉରୁମ ଦେଖାଇଲ ।"

କର୍ମକାର କାନ୍ଥ ନିକଟକୁ ଯାଇ ସୁଇଚ୍ ଟିପିଦେଲେ । ରୁମରେ ବର୍ଣ୍ଣିଳ ଆଲୋକର ଏକ୍‌ସରୁଧାର ବନ୍ଦହୋଇ ତରଙ୍ଗ ସୃଷ୍ଟି କଲା । ମୁଁ ଆମୋଦ ଅନୁଭବ କରିବା ସଙ୍ଗେ ସଙ୍ଗେ କର୍ମକାରଙ୍କୁ ଦେଖିଥିଲି ।

'ଯାଅ, ଦୁଇକପ୍ ଟି' ପଠାଅ ।'

କର୍ମକାର ଯିବାବାଟକୁ ମୁଁ ଅନାଇ ରହିଥିଲି । ଧ୍ରୁବତାରା ମୋତେ ଲକ୍ଷ୍ୟକରି କହିଲେ, "ଦେଖ ସୁବ୍ରତ—ଏମାନଙ୍କୁ ଜଣଙ୍କୁ କଥାବାର୍ତ୍ତା କରି ଆସୁନି, ଆଉଜଣେ ନିଜକୁ ସବ୍‌ଜାନତା ବୋଲି ଭାବୁଛି । ଏଭଳି ଇଡ଼ିୟେଟ୍‌ଗୁଡ଼ାଙ୍କୁ ଧରି କେମିତି କାମ ହେବ । ମୁଁ ଯେତେବେଳେ ମିନାକ୍ଷୀ ନଗରରେ ଥିଲି।" ଟେଲିଫୋନ୍‌ର ଆବାଜ । ସେ ରିସିଭର ଉଠାଇବା ବେଳକୁ ମୁଁ କାଲି ଆସିବି କହି, ସେଠାରୁ ବାହାରି ଆସିଥିଲି । ଆଖିରେ ପଡ଼ିଲା କର୍ମକାର ଓ ପରାଶରଙ୍କର ମୁହଁ । ମୋତେ ଚାହିଁଦେଇ ହସିଦେଲେ ଦୁହେଁ । ମୁଁ ମନେ ମନେ କେବଳ ଏମାନଙ୍କ ଚଢ଼ଙ୍ଗ କଥା ଚିନ୍ତାକରି ସେ କକ୍ଷରୁ ନିଷ୍କ୍ରାନ୍ତ ହେଲି ।

**ମଙ୍ଗଳବାର**

ଅଫିସରେ କାର୍ଯ୍ୟକରୁଛି, ହଠାତ୍ ଟେଲିଫୋନ୍ ପାଇଲି କୌଣସି ଶାଖା କାର୍ଯ୍ୟାଳୟର ତତ୍ତ୍ୱାବଧାରକଙ୍କ ସହ କର୍ମଚାରୀମାନଙ୍କର ଗୋଳ ହୋଇଛି । ସାଙ୍ଗେ ସାଙ୍ଗେ ସମାଧାନ କରିବାକୁ ହେବ । ଚାଲିଲି ଧ୍ରୁବତାରାଙ୍କ ମଣ୍ଡଳ କାର୍ଯ୍ୟାଳୟ । ଭିତରେ ପଶୁ ନ ପଶୁଣୁ ଅଜିତ ବରଦାକର ମୋଆଡ଼େ ଚାହିଁ ହସିଦେଲେ । କିଛି ବୁଝିପାରିଲିନି ମୁଁ । ଧ୍ରୁବତାରା ମଣ୍ଡଳ କାର୍ଯ୍ୟାଳୟର ସବୁଠାରୁ ବରିଷ୍ଠ ସଦସ୍ୟ କହିଲେ ଭୁଲ୍ ହେବନି । ଟିକିଏ ଗମ୍ଭୀର ପ୍ରକୃତିର । ପୁଲସ୍ତ୍ୟ କରିତକର୍ମା ଓ ଅଜିତ ବରଦାକରଙ୍କର ପ୍ରାୟ ପଡ଼େନି । ମାତ୍ର ମନଖୋଲି ଏକଥା କେହି କାହାକୁ କହି ନାହାନ୍ତି । ପୁଲସ୍ତ୍ୟ ବନ୍ଧୁ ମେଳରେ ତାଙ୍କ ବିରୁଦ୍ଧରେ ସିନା ବିଷୋଦ୍‌ଗାରଣ କରନ୍ତି, ମାତ୍ର ତାଙ୍କ ସାମନାରେ ଏକ ଉପଯୁକ୍ତ ଛେଳି । ସେ କାମରେ ବହୁତ ପ୍ରବୀଣ ଏବଂ ସେଥିପାଇଁ ଧ୍ରୁବତାରା ତାଙ୍କୁ ସଙ୍ଗରେ ଧରି ଆସିଛନ୍ତି । ମାତ୍ର ପୁଲସ୍ତ୍ୟଙ୍କ ଭାଷାରେ ସେ ନିହାତି ନିକମା ଓ ଅତ୍ୟଧିକ ଖୋସାମତ କରନ୍ତି ।

ଶୀତତାପ ନିୟନ୍ତ୍ରିତ କକ୍ଷରେ ବିରାଜ କରୁଥାନ୍ତି ଧ୍ରୁବତାରା । ପଶିଯିବା ବେଳକୁ କରୁ, ପୁଲାହ ଓ ପୁଲସ୍ତ୍ୟ ତିନିଜଣ ବିଦ୍ୟମାନ । ଛିଡ଼ାହୋଇ ଗୋଡ଼କୁ ମଜବୁତ୍ କରୁଛନ୍ତି । ସମସ୍ତ ୨ଟା ହେବ । ଖାଇବାପାଇଁ ଜଣେ ଜଣେ ଆସି ମିଶିଲେ । ଯେ ଯାହା ଆଣିଥିଲି, ଅନ୍ୟକୁ ଦେଲି ମୁଁ ଥିଲି ଆଗନ୍ତୁକ ଅତିଥି ।

ପୁଲସ୍ତ୍ୟ କହିଲେ, "ସାର୍, ଆଜି ମିସେସ୍ ଇଡ଼ଲି ଦେଲାବେଳେ ଆପଣଙ୍କୁ ଦେବାପାଇଁ କହିଛି । ସେ ଆପଣଙ୍କ ପାଇଁ ସ୍ପେଶାଲ କରିବ ଦେଇଛି ।"

"ମୋ ପତ୍ନୀଙ୍କର ସ୍ପେଶାଲ ଆଳୁଭଜା ଟିକିଏ ଚାଖନ୍ତୁ ସାର୍ ! ସେ ଦିଲ୍ଲୀରେ ପଢ଼ିବାବେଳେ ହୋଷ୍ଟେଲରେ ସ୍ପେଶାଲ ଟ୍ରେନିଂ ନେଇଛନ୍ତି ।" କର୍ମକାର ପୁଲସ୍ତ୍ୟଙ୍କ ପରେ କହିଉଠିଲେ । ମୁଁ କିନ୍ତୁ ନୀରବରେ ଖାଇଚାଲିଥିଲି ।

ପଦାଧିକାରୀମାନଙ୍କ ମଧ୍ୟରୁ ବାଦ ପଡ଼ିଯାଇଥାନ୍ତି ବଶିଷ୍ଠ ପଣ୍ଡା ଓ ମସାଜ ସୁଆଁର ଏମାନେ ଧ୍ରୁବଜ୍ୟୋତିଙ୍କଠାରୁ ଟିକିଏ ଦୂର ଲୋକ । ବଶିଷ୍ଠ ପଣ୍ଡା ଚେଷ୍ଟାକରିଛନ୍ତି ତାଙ୍କର ନିକଟ ହେବାକୁ କାରଣ ପୁଲସ୍ତ୍ୟଙ୍କ ସହିତ ତାଙ୍କର ଭଲ ଭାବ ନାହିଁ ।

ଖାଇବା ପିଇବା ସରିବା ବେଳକୁ ଅର୍କି ବରଡାକର ଧ୍ରୁବଜ୍ୟୋତିଙ୍କ ଡବାଟିକୁ ନେଇ ପଶିଗଲେ ଧୋଇବାକୁ । ବଢ଼ାଇଦେଲେ ଟାଓ୍ୱେଲ ଓ ପାଣି ଗ୍ଲାସ । ଧ୍ରୁବଜ୍ୟୋତି ତାଙ୍କୁ ଅତ୍ୟନ୍ତ ବ୍ୟକ୍ତିଗତ ସହାୟକ ଭାବରେ ନିଯୁକ୍ତ ଦେଇଛନ୍ତି ବୋଲି ଶୁଣିଲି ଏବଂ ଏପରିକି ତାଙ୍କ ଜୀବନର ସମସ୍ତ ଅଭିଳାଷକୁ ପୂରଣ କରିବାକୁ ସେ ଯତ୍ନ କରୁଛନ୍ତି । ଏମାନଙ୍କ ସାମନାରେ କ'ଣ ଏବେ କହିବି ଭାବି ଲୋଉଟି ଆସିଲି ।

**ବୁଧବାର**

ମୁଁ ଏଦିନ ପ୍ରାୟ ସବୁ କାର୍ଯ୍ୟ କରିଥାଏ, ଯେହେତୁ ବୁଧବାର ମୋପାଇଁ ଏକ ଶୁଭ ଦିନ । ତେଣୁ କେତେକ ବିଷୟରେ ଆଲୋଚନା କରିବା ପାଇଁ ଗଲି ମଣ୍ଡଳ କାର୍ଯ୍ୟାଳୟ । ବିରୁଦ୍ଧ କେହି ପଚାରନ୍ତି ନାହିଁ, ତେଣୁ ମୋର ପଚାରିବା କ'ଣ ଦରକାର । ନୂଆହୋଇ ଆସିଥିବା ଅର୍କିର ମୁଖୋପାଧ୍ୟାୟଙ୍କ ସହିତ ମୋର ଆଗରୁ ଜଣାଶୁଣା । ଭାରି ସିରିୟସ୍ । ସେ ଦୁଇ ନାଆରେ ଗୋଡ଼ ଦେବା ଲୋକ । ବର୍ଷାକୁ ଭୟ ଛତା କେବଳ ଏପାଖ ସେପାଖ ହୁଏ । ତାଙ୍କୁ ପ୍ରାୟ ସବୁବେଳେ ଧ୍ରୁବଜ୍ୟୋତିଙ୍କ ସହ ଦେଖିଛୁ । ଧ୍ରୁବଜ୍ୟୋତିଙ୍କ ଘରେ ସେ ପ୍ରାୟ ସକାଳୁ ରାତି ଯାଏ ରହନ୍ତି ବୋଲି ପୁଲସ୍ତ୍ୟ ସେ ଦିନ କ୍ଷୋଭ ପ୍ରକାଶ କରୁଥିଲେ । ନିଜକୁ ଅତ୍ୟନ୍ତ ଚତୁର ଓ ସ୍ମାର୍ଟ ବୋଲି ଭାବୁଥିବା ପୁଲସ୍ତ୍ୟ ମୋତେ କହିଲେ, ସୁବ୍ରତ ! ଅର୍କିର ମୁଖୋପାଧ୍ୟାୟ ଅର୍କିଠାରୁ ବଳିଗଲଣି । ମୁଁ ଜଣକୁ ପ୍ରତିଯୋଗିତାରେ ଡେଇଁବାବେଳକୁ ଆଉ ଜଣେ ହାଜର । ବଜାର୍‌ସଉଦା କରିବାଠାରୁ ଆରମ୍ଭ କରି, ଲୁ ଡଆରି କରିବା ପର୍ଯ୍ୟନ୍ତ ସବୁ କରୁଛୁ । ମୁଁ ଲୁ କରିବା ଶିଖିଛୁ ମାତ୍ର ସକାଳୁ ଉଠି ତାଙ୍କ ଘର ପର୍ଯ୍ୟନ୍ତ ଯିବାବେଳକୁ ଅର୍କିର ଆସି କାର୍ଯ୍ୟ ସାରି ଦେଉଛୁ ।"

ହଠାତ୍ ଅର୍କିର ମୁଖୋପାଧ୍ୟାୟ ମୋତେ ଟାଣିନେଇ ପୁଲସ୍ତ୍ୟଙ୍କ ସମ୍ପର୍କରେ ପଚାରିଲେ, "ସୁବ୍ରତ ବାବୁ ! ପୁଲସ୍ତ୍ୟଙ୍କୁ ଆପଣ ବହୁଦିନ ହେଲା ଜାଣନ୍ତି । କହିଲେ ଦେଖି ସେ କେମିତିକା । ମୁଁ ଏ ପର୍ଯ୍ୟନ୍ତ ସେ ଓଡ଼ିଆ, ବଙ୍ଗାଳୀ, ହିନ୍ଦୀ ବା ମାନ୍ଦ୍ରାଜୀ କେଉଁଠିକାର ଜାଣି ପାରିଲି ନାହିଁ । ହ ଧ୍ରୁବଜ୍ୟୋତି କହୁଥିବାର ଶୁଣିଛୁ, ସେ କାଲି ମଣ୍ଡଳ କାର୍ଯ୍ୟାଳୟର ମୁଖ୍ୟଙ୍କୁ ସନ୍ତୁଷ୍ଟ କରିବା ପାଇଁ ତାଙ୍କ ଭାଷା କହିବା ପାଇଁ ଅଭ୍ୟାସ ଏବଂ ପ୍ରତ୍ୟେକ ଦିନ ଗୋଟିଏ ଗୋଟିଏ ଶବ୍ଦ ଶିଖୁଛନ୍ତି ।

ଏଥିପାଇଁ ମୋର କେତେଟା ଦୁର୍ବଳତା ଅଛି ଅର୍ଥାତ୍ ମୁଁ ଅତି ମାତ୍ରାରେ ମାତୃଭାଷା ପ୍ରିୟ । ତେଣୁ କ'ଣ ଉତ୍ତର ଦେବି ଭାବି ନ ପାରି କେବଳ ପଢ଼ରେ କହିଲି, "ସବୁ ପିଲାମାନେ କୋଇଲି ହେବାକୁ ଚେଷ୍ଟା କରୁଛନ୍ତି ।

**ଝୁଲୁବାବୁ**

ମୋର ବନ୍ଧୁ ପରୀକ୍ଷିତଙ୍କଠାରୁ ଟେଲିଫୋନ୍ ପାଇଲି, ସିବାକୁ ଅନୁରୋଧ । କେହି ବନ୍ଧୁ ଅବସରରୁ ବିଦାୟ ନେବେ । ମଦ୍ଧ୍ୟାହ୍ନ ବେଳକୁ ଚେୟାର ଟେବୁଲ ସଜା ଚାଲିଛି । ବଣିଷ୍ଟ ଯାଉଛନ୍ତି ଉପଢୌକନ ଆଣିବାକୁ । ମୁଁ ବସିକରି ଲକ୍ଷ୍ୟ କରୁଥିଲି କିଏ କେତେଥର ଧ ବତାରୀଙ୍କ ଶୀତତାପ ନିୟନ୍ତ୍ରିତ କକ୍ଷକୁ ଯାଉଛି । ପୁଳହ ସୁଅରମ୍ଭରୁ ତଦାରଖ କରି ଚାଲିଛନ୍ତି । ସମୟେ ବସି ସାରଲେଣି । ଧ୍ରୁବତାରୀ ଆସି କେବଳ ଆସନ ଗ୍ରହଣ କରିବେ । ଆଗରେ ଧ୍ରୁବତାରୀ ପଛରେ ପୁଲହ, ପୁଲସ୍ତ୍ୟ ଓ ଅତ୍ରି । ହଠାତ୍ ମୋତେ ଦେଖି ପକାଇ ଧ୍ରୁବତାରୀ କହିଲେ "ହାଲୋ । ସୁବ୍ରତ । କେତେବେଳେ ଆସିଲ । ଭଲକଲ । ବର୍ତ୍ତମାନ ତୁମକୁ ମିଠା ଖାଇବାକୁ ମିଳିବ ।' ଯେତେବେଳକୁ ମୁଁ ରସଗୋଲାଟିକୁ ଗଳାଧଃକରଣ କରି ସାରିଥିଲି । ହଠାତ୍ ସେ ବୁଲିପଡ଼ି ନିଜ କକ୍ଷକୁ ଚାଲିଗଲେ ଏବଂ ପଛରେ ସେହି କ୍ରମରେ ପୁଲହ, ଅତ୍ରି, ପୁଲସ୍ତ୍ୟ ।

ପୁଲସ୍ତ୍ୟ ପ୍ରଥମେ ବାହାରକୁ ଆସି ଘୋଷଣା କଲେ ଧ୍ରୁବତାରୀ ବର୍ତ୍ତମାନ ଅସୁସ୍ଥ ଅନୁଭବ କରୁଛନ୍ତି, ସେ ସଭାକୁ ଆସି ପାରିବେନାହିଁ । କେବଳ ଉପଢୌକନ ଦେବାକୁ ଆସିବେ । ତେଣୁ ସଭାକାର୍ଯ୍ୟ ବନ୍ଦ ରହିଲା । ଅଳ୍ପ ପରେ ପ୍ରବେଶ କଲେ ପୁଲହ । ବେଶ୍ ହସ ହସ ମୁହଁ ସବୁବେଳେ ହାତରେ କଲମ । "ଚଞ୍ଚଳ ଚଞ୍ଚଳ ମିଠା ଖାଇଦିଅ । ଉପଢୌକନ ଆସିଲା ।

ଧ୍ରୁବତାରୀଙ୍କ ସାଙ୍ଗରେ ଅତ୍ରି ଆସି ବିଦାୟ ଦେଉଥିବା କର୍ମଚାରୀଙ୍କୁ "ଉଇସ୍ ୟୁ ଏ ହ୍ୟାପି ଲାଇଫ୍, କହି ଉପଢୌକନଟିକୁ ଧରାଇ ଦେଲେ । ଜୋରରେ ତାଳିମାରିବାକୁ ଆରମ୍ଭ କରି ଦେଇଥିଲେ ପୁଲହ କର୍ମଚାରୀ ଓ ପୁଲସ୍ତ୍ୟ କରନ୍ତି କର୍ମୀ ।

ମୁଁ ବନ୍ଧୁ ପରୀକ୍ଷିତଙ୍କ ମୁହଁକୁ ଚାହିଁବାବେଳେ ସେ ଚୁପ୍ ଚୁପ୍ କହିଲେ ତୁମେ ପଛ ବସିଛ, ମିଟିଂ କେମିତି ହେବ । ସେଥିପାଇଁ ପ୍ରଥମେ ତୁମକୁ ଦେଖି ଚମକି ପଡ଼ିଲେ ।' ମୁଁ ମନେ ମନେ ଦୁଃଖିତ ହେଲି । ସକାଳୁ ଆଜି ମୁହଁ ଧୋଇବା ପରେ ବର୍ଦ୍ଧିତ ଦାଢ଼ି ଗୁଡ଼ାକ କାଟି ଦେଇଥିଲେ ଭଲ ହୋଇଥାଆନ୍ତା ଭାବି ନିଜକୁ ଧିକ୍କାର କରି ପରୀକ୍ଷିତଙ୍କ ଠାରୁ ପ୍ରସ୍ଥାନ କଲି ।

## ଶୁକ୍ରବାର

ହଠାତ୍ ବାଟ ମଝିରେ ବର୍ଷା ହୋଇଥିବା ହେତୁ ମୁଁ ଅଟକିଗଲି । ଦୂରରେ ଠିଆ ହୋଇଥିଲେ ସୁଆଁର । ମୋତେ ଦେଖି ମୋ ପାଖକୁ ଆଗେଇ ଆସି କହିଲେ, 'ସୁବ୍ରତବାବୁ, ନମସ୍କାର । କ'ଣ ଅମ ଅଡ଼େ ଯାଉଛନ୍ତି କ' ମୁଁ ମୁଣ୍ଡ ହଲାଇ 'ହଁ' ଭରିଲି । ମରଚ ସୁଆଁର ଅଲଦନ ହେବ ଜାତନ ପୃଙ୍ଗୀ ଗ୍ରହଣ କରିଛନ୍ତି । ଟେକା ଲୋକ ବାହାରେ କେତେଦିନ କଟାଇ ଆସିଛନ୍ତି । ମୁଣ୍ଡରେ ମସଲ ଅଛି ବୋଲି ସେ ଛାତି ଫୁଲାଇ ବୁଲନ୍ତି ।

ବୁଝିଲେ ସୁବ୍ରତବାବୁ; ମଣ୍ଡଳ କାର୍ଯ୍ୟାଳୟରେ ସମସ୍ତେ ଧ୍ରୁବଚାର୍ଯ୍ୟଙ୍କୁ ତୋଷାମଦ କରିବାରେ ବ୍ୟସ୍ତ । ପୁଲସ୍ତ୍ୟଙ୍କୁ କଛୁ ଆସେନ ମାତ୍ର ମୋ ଉପରେ ତାର ରାଗ । ମଝିରେ ଲାଗିଥିଲେ ମୋତେ ବଦଳି କରିବାକୁ । ମୁଁ ସିଧା ହାଜର ହୋଇଗଲି ଧ୍ରୁବଚାର୍ଯ୍ୟଙ୍କ ପାଖରେ । ପୁଲସ୍ତ୍ୟ ଭାବିଥିଲି, ତାଙ୍କୁ ଖୋସାମତ କରିବ । ତାଙ୍କୁ ଏ ଗୁଡ଼ାକୁ ବିଶ୍ୱାସ ନ କରିବାକୁ କହିଲି । ସେଦିନ ତାଙ୍କ ଘରେ ପହଞ୍ଚିବା ବେଳକୁ ତାଙ୍କର ପତ୍ନୀଙ୍କ ଦେହ ଖରାପ । ମୁଁ ତାଙ୍କୁ ମୋର ବନ୍ଧୁ ଡାକ୍ତର କହି ଆଣିଲି ଡାକ୍ତରଖାନା ।' ରବିବାର ଥାଏ, ବହୁତ ଭିଡ଼ । ଯାହା ହେଉ ବନ୍ଧୁ ଦେଖି ଔଷଧ ଲେଖିଦେଲେ । ମାଗଣାରେ ଔଷଧ ଦୋକାନରୁ ଆଣି ଦେଲି । ସେଇଠୁ ସେ ଜାଣିଲେ ଯେ ତାଙ୍କର ପ୍ରକୃତ ସହକର୍ମୀ କିଏ ! ସେ ବର୍ତ୍ତମାନ ମୋ ଉପରେ ବହୁତ ଖୁସି । ଏଠାକୁ ଆଉ ଯିବା ଦରକାର ପଡ଼ୁନାହିଁ । ଘର ନବସାଉଛି ଏ ଆଡ଼େ ଧ୍ୟାନ ଦେବାକୁ ପଡ଼ୁଛି । ହୋଃ, ହୋଃ ଆପଣତ 'ପୁରୁଣା ଲୋକ ।'

ବର୍ଷା ଛାଡ଼ି ଯାଇଥିଲା । ସେ ନିଜ ବାଟରେ ବୁଲିଗଲେ, ମୁଁ ଚା ପିଇବାକୁ କ୍ୟାଣ୍ଟିନ୍‌ରେ ପଶିଲି ।      ×      ×      ×

## ଶନିବାର

'ହ୍ୟାଲୋ ! ସୁବ୍ରତ ବାବୁ । ମୁଁ ବଶିଷ୍ଠ ପଣ୍ଡା ଧ୍ରୁବଚାର୍ଯ୍ୟ ମଣ୍ଡଳ କାର୍ଯ୍ୟାଳୟରୁ କହୁଛି । ଆପଣ ଏଆଡ଼େ ଆସିବେକି ?' କିଛି ଜରୁରୀ କାର୍ଯ୍ୟ ହେବ ଭାବି ମୁଁ ପହଞ୍ଚିଲି ଗୋଟାକ ବେଳେ । ମୋତେ ନିଜ ପାଖରେ ଆସନ ଦେଇ କହିଲେ, 'ଆପଣଙ୍କୁ ଡାକିବାର କାରଣ ଏ କାର୍ଯ୍ୟାଳୟରେ ମୋର ଶ୍ୱାସରୁଦ୍ଧ ହେଲାଣି । ସମସ୍ତେ ଧ୍ରୁବଚାର୍ଯ୍ୟଙ୍କ ପାଖରେ ଫୁସ୍ ଫୁସ୍ । ମୁଁ ଏକଲା କ'ଣ କରିବ । ପୁଲସ୍ତ୍ୟ କିରଣ୍ଡକର୍ମୀ । କଥା ତ ଜାଣନ୍ତି । ଆପଣ କିଛି ଏହାର ବ୍ୟବସ୍ଥା କରନ୍ତୁ । ମୁଁ ଏ ଅଳ୍ପ ସମସ୍ତ

ଭିତରେ ତାଙ୍କ ପାଇଁ କ'ଣ ନ କରିଛୁ । ନୂଆ ଟଙ୍କା ଦରକାର ଗଲୁ ରିଜର୍ଭ ବ୍ୟାଙ୍କ । ସିନେମା ଟିକେଟ୍... ଧରିଲୁ କଳାବଜାରୀଙ୍କୁ । ଗାଡ଼ି ମରାମତି ଗଲୁ ଗ୍ୟାରେଜ୍... ଇତ୍ୟାଦି ଅନେକ କାର୍ଯ୍ୟ । ସକାଳୁ ସନ୍ଧ୍ୟା ରବିବାର ଠାରୁ ଶନିବାର ।'

ମୁଁ ଉତ୍ତର ଖୋଜି ନ ପାଇ ପଶିଗଲି ଧ୍ରୁବତାରାଙ୍କ ଶୀତତାପ ନିୟନ୍ତ୍ରିତ କମରା ଭିତରକୁ । ତା ଭିତରେ ସମସ୍ତେ । ନରୁ, ପ୍ରହ୍ଲାଦ ପୁଲସ୍ତ୍ୟ, ଅର୍ଜି, ଅର୍ଚ୍ଚିରା ମୁହଁରେ ହସମାନ ଲାଗିଛି । ଧ୍ରୁବତାରା ଯାହା କହୁଛନ୍ତି ତାକୁ ଶୁଣି ଗଦ୍ ଗଦ୍ ହୋଇ ପଡ଼ୁଛନ୍ତି ।

'ସୁବ୍ରତ; ଅଞ୍ଚଳ କାର୍ଯ୍ୟାଳୟକୁ ଆସିଥିବା ନୂତନ ପଦାଧିକାରୀ ମୋର ପରମ ବନ୍ଧୁ । ମୁଁ ଏମାନଙ୍କୁ ତାଙ୍କ କଥା କହୁଥିଲି । ଯେତେବେଳେ ମିନାକ୍ଷୀନଗରରେ ଥିଲି, ତାଙ୍କ ସହିତ ଗପ କରିବାଠାରୁ ଖାଇବା ପର୍ଯ୍ୟନ୍ତ ମୋତେ କ୍ଷଣିକ ପାଇଁ ପାଖରୁ ଛାଡ଼ୁ ନଥିଲେ । ଦିନେ ଦିନେ ମୋତେ କହିବେ, 'ଧ୍ରୁବତାରା ତୁମେ ନଥିଲେ ମୋତେ ଏ ମିନାକ୍ଷୀ ନଗରରେ ରହିବାକୁ ଆଦୌ ଭଲ ଲାଗନ୍ତାନି । ତୁମେ ଥିବାରୁ ମଣିଷ କିଛିଏ ଭଲ କ୍ଷୀର, ସଜ ପରିବା ଓ ମାଛଠାରୁ ଔଷଧପତ୍ର ପାଇ ପାରୁଛି । ଘରଟିଏ ତ ଚମତ୍କାର ଖୋଜି ଦେଇଛ ।' ହଁ, ପରୀକ୍ଷାଫଳ ଶୁଣିଲଣି । ସବୁ ବର୍ଷ ମୁଁ ତୁମକୁ ପରୀକ୍ଷାଫଳ ଶୁଣାଉଛି; କେମିତି କହି ପାରିବ ? ମୁଁ ଏମାନଙ୍କୁ ସେଇକଥା ସବୁ କହୁଛି । ଜୀବନରେ ଉଚ୍ଚତର ସୋପାନକୁ ଯିବାକୁ ହେଲେ... ।' କଲିଂବେଲ୍ ମାରିଲେ । ବଶିଷ୍ଠ ପଣ୍ଡା ଓ ମରିଚ ସୁଆଁରକୁ ଡାକ । ନୂଆ ଟୋକା ଗୁଡ଼ାକ କିଛି ଶିଖି ନାହାନ୍ତି । ପ୍ରହ୍ଲାଦ ବର୍ତ୍ତମାନ କେତେ ସ୍ମାର୍ଟ ଓ ପୁଲସ୍ତ୍ୟ କାର୍ଯ୍ୟରେ ଏତେ ବିଚକ୍ଷଣ ଯେ ପ୍ରମୋଶନ୍ ମିଳିବା ଉଚିତ୍ । ଶିଖିଥିଲେ ସିନା ପ୍ରତିଯୋଗିତାରେ ଭାଗ ନେବ । ନମ୍ବରଟିଏ କମ୍ ହୋଇଗଲେ ଭାଗ୍ୟର ବିପର୍ଯ୍ୟୟ ।' ସେତେବେଳକୁ ବଶିଷ୍ଠ ପଣ୍ଡା ଓ ମରିଚ ସୁଆଁର ପ୍ରବେଶ କରି ଅନ୍ୟମାନଙ୍କ ସହିତ ଛିଡ଼ା ହୋଇ ଶୁଣୁଥିଲେ । ସମସ୍ତେ ହସ ହସ । ମୁଁ ଧ୍ରୁବତାରାଙ୍କ ସାମନା ଚୌକିରେ ବସି ସମସ୍ତଙ୍କ ଅଡ଼େ ଅଖି ଘୁରାଇ ଆଣୁଥିଲି । କବାଟ ଖୋଲି ପ୍ରବେଶ କଲେ ମୋ ଶାଖା କାର୍ଯ୍ୟାଳୟର ତତ୍ତ୍ୱାବଧାରକ ।

'ଆସ କୃଷ୍ଣପଦ ! ତୁମେ ବି ଏମାନଙ୍କ ସହିତ ମୋ ଜୀବନର ଅନୁଭୂତିକୁ ଶୁଣ । ସ୍ମାର୍ଟ୍ ଲୋକ । ବହୁତ ଦାୟିତ୍ୱ ନେବ ।
ମୁଁ ଉଠି ଛିଡ଼ା ହେଲି ଏବଂ ପରେ ଦେଖା ହେବ କହି କକ୍ଷରୁ ନିଷ୍କ୍ରାନ୍ତ ହେଲି ।

ମୋଟା ମୋଟି ଏବେ ଏ ହେଲା ମୋର ଜୀବନର ଘଟଣା । ମୁଁ କେବଳ କୃଷ୍ଣପଦଙ୍କ କଥା ଭାବୁଥିଲି । ଏ ଦୁଇ ଟିକକ ସେ କାହିଁକି ସନ୍ଦେହ କରୁ ନାହାନ୍ତି ବୋଲି କ୍ଷୋଭ କରୁଥିଲି ।

ଧ୍ରୁବତାରା ମଣ୍ଡଳ କାର୍ଯ୍ୟାଳୟ ବର୍ତ୍ତମାନ ମୋର ମୁଖ୍ୟ ଚିନ୍ତାର ବିଷୟ । ଏମାନଙ୍କ ମଧୁର ହସର ଗୁଞ୍ଜନରେ ମୁଁ ଜଳୁଛି । ମୃତ୍ୟୁର ବାଟ ଅନୁସନ୍ଧାନରେ ରାତି ସାରା ଆଖିକୁ ନିଦ ଆସୁନାହିଁ ।



# ରାମନାମ ସତ୍ୟହେ

ପାହାନ୍ତା ପହରରୁ କୁଆ କାଁ କାଁ କରି ଘର ଚାରିପାଖରେ ବୁଲୁଥିଲା । ସକାଳର ଝିରି ଝିରି ପବନ ଝରକା ଦେଇ ପଶି ଆସୁଥିଲା ଭିତରକୁ । ହଠାତ୍ ମୋର ନିଦଟା ଭାଙ୍ଗିଗଲା । ପ୍ରତ୍ୟେକ ଦିନ ସକାଳ ୫ଟା ବେଳକୁ ଉଠିବାର ଅଭ୍ୟାସ ବ୍ୟତିକ୍ରମ ହୁଅନ୍ତା କେମିତି । ଦେବ ମନ୍ଦିରରୁ ଅତି ମଧୁର ସ୍ୱରରେ ଗୀତାର ଅମୃତତୁଲ୍ୟ ଶ୍ଳୋକ ଗୁଡ଼ିକ ପବନର ତରଙ୍ଗରେ ଖେଳି ବୁଲୁଥିଲା । ଆଃ, କି ମାଧୁର୍ଯ୍ୟ ଭରି ରହିଛି ଏହି ଶ୍ଳୋକରେ । ବୀଣାର ମଧୁର ସ୍ୱର, ଗୀତାର ଶ୍ଳୋକ ମାନଙ୍କର ଆବୃତ୍ତି, ବେଦଧ୍ୱନି, କୁଆର କା କା ଶବ୍ଦ, ମୃଦୁ ମନ୍ଦ ମଳୟ ପବନ ପ୍ରଭାତକୁ ମଧୁମୟ କରି ତୋଳୁଥିଲା । ଏହି ଶ୍ଳୋକ ମାନଙ୍କରେ କେତେ ନିଗୂଢ଼ ତତ୍ତ୍ୱ ପୂରି ରହିଛି ।

"ଯେ ଯଥା ମାଂ ପ୍ରପଦ୍ୟନ୍ତେ, ତାସ୍ତଥୈବ ଭଜାମହ୍ୟମ୍
ମମ୍ ବାର୍ତ୍ତାନୁବର୍ତ୍ତନ୍ତେ ମନୁଷ୍ୟା ପାର୍ଥ ସର୍ବଶଃ ॥

× × ×

ଯତ୍ କରେଷି ଯଦ୍ଶ୍ୟାସି ଯତ୍ତ୍ରୁହୋସି ଦଦାସିଯତ
ସତ୍ୟ ପଶ୍ୟସି କୌନ୍ତେୟ ତନୁରଷ୍ୟ ମଦର୍ପଣମ୍ ॥

ନିଦ କେତେବେଳୁ ଭାଙ୍ଗି ଯାଇଥିଲା । ବିଛଣାରୁ ଉଠି ପଡ଼ିଲି । ପାହାନ୍ତିଆ ସକାଳରେ 'ମର୍ଣ୍ଣିଂଓ୍ୱାକ୍' କରିବାର ଅଭ୍ୟାସ । ହାତରେ ବାଡ଼ିଟିଏ ଧରି ଚାଲିବାକୁ ଆରମ୍ଭ କରି ଦେଲି ନଇବନ୍ଧ ଉପରେ । ଗାଁର ଝିଅ ବୋହୂମାନେ କାଖରେ ଗରା ଓ କଳସୀ କାଖେଇ ନଈକୁ ଚାଲିଥିଲେ ଗାଧୋଇବା ଉଦ୍ଦେଶ୍ୟରେ । ମୁଁ ମନେ ମନେ ଗୀତାର ଶ୍ଳୋକ ଗୁଡ଼ିକୁ ଆବୃତ୍ତି କରି ଆଗକୁ ଆଗକୁ ମାଡ଼ି ଚାଲିଲି । ଦିନର ଏହି ବେଳାଟି ମୋ ପାଇଁ ଥିଲା ଅତ୍ୟନ୍ତ ଅମୃତମୟ । ମନରେ ଅସଂଖ୍ୟ ଓ ଅଗଣିତ ଭାବନା ଉଠୁଥିଲା । ନଇବନ୍ଧ ଯେଉଁଠି ଶେଷ ହୋଇ ଯାଇଥିଲା, ସେହିଠାରେ ବସି ପଡ଼ିଲି

କିଛିକ୍ଷଣ ଧରଣୀର ଖବରେ । 'ନିର୍ଝରେ 'ଅଁଶା ପାଣି ।' 'ମୁଁ' ଏକାକୀସ୍ୱରେ ନଈକୁ ଅନାଇ ରହିଥିଲି । ପ୍ରକୃତିର 'ଅପୂର୍ବ ରୂପରେ ନିଜର ସସୀମ ସତ୍ତାକୁ ଅସୀମରେ ଲୀନ କରି ଦେବାର ପ୍ରଯତ୍ନ କରୁଥିଲି ।

କାହାର କରୁଣ କାନ୍ଦଣାରେ ହଠାତ୍ ଚମକି ଉଠିଲି । ଦୂରରୁ ଭାସି ଆସୁଥିଲା ଏକ ଛୋଟ ପିଲାର କରୁଣ ମର୍ମସ୍ପର୍ଶୀ ଆକୁଳ କ୍ରନ୍ଦନ । ସେ କାନ୍ଦି କାନ୍ଦି କହୁଥିଲା, "ବା' ଲେ, ବା; ଉଠିବୁନି କି ? ମୋତେ ଭୋକ ହେଲାଣି । କାଲିଠାରୁ ଶୋଇଛୁ । ଏ ପର୍ଯ୍ୟନ୍ତ ଉଠିବାକୁ ମନ କରୁନୁ । ଉଠ୍‌ନା ବାବା । ବାବମ, ଉଠିଲେ ଗାଧୋଇବା । ବାବାମ...ବାବା...ବା...ବା ...।" ପିଲାଟା ବଡ଼ ପାଟିରେ ଚିତ୍କାର କରି ଡାକ ଛାଡ଼ୁଥିଲା ।

ମୁଁ ଗୋଟିଏ ଗୋଟିଏ ହୋଇ ସେଇ ଦିଗକୁ ଆଗେଇ ଚାଲିଲି । ବାଟରେ ଭେଟ ହେଲା ନିକଟ ଗାଁରେ ଶିକ୍ଷକତା କରୁଥିବା ଆମ ଗାଁର ଅଗାଧ ମିଶ୍ରେ । ମିଶ୍ରଙ୍କର ବୟସ ଷାଠିଏ ପାଖାପାଖି ଧରିଲାଣି । ଗାଁର ଶାବଶାସ୍ତ୍ର ନ୍ୟାସ୍ତ ନିଷାପରେ ଖୋଜାପଡ଼େ । ମୁଁ ତାଙ୍କୁ ନମସ୍କାର କରି ପଚାରିଲି, "ମିଶ୍ର ମହାଶୟ, କାହା ପିଲାଟି ଏତେ ଜୋରରେ କାନ୍ଦୁଛି ? ଘଟଣା କଣ ?"

"ତୁମେ ଜାଣିନ କି ? କାଲି ସନ୍ଧ୍ୟା ବେଳଠାରୁ କୁମ୍ଭାର ସାହିର 'ହରିମ ମା-ଟି ମରି ପଡ଼ିଛି । ତାର ପିଲାଟି ହୁଇଁଳ ବିକଳ ହୋଇ କାନ୍ଦୁଛି । ୪ ବର୍ଷର ଛୋଟ ପିଲାଟା । ସେ କ'ଣ ଜାଣିବ ମୃତ୍ୟୁ କଥା । ଦି ଦିନ ହେଲା ଖାଇ ନାହିଁ । ଘରେ ଅନ୍ୟ କେହି ନାହାନ୍ତି । ମଶାଣିକୁ ନେବାକୁ କେହି ଖଇସାଇରେ ଆସି ଯୁଟି ନାହାନ୍ତି । ପିଲାଟା ତାର ଦାଦା କକାଙ୍କୁ କେତେ ନେହୁରା ହେଲା । ମାତ୍ର କେହି ଶୁଣୁ ନାହାନ୍ତି । ତା ବାପା ବଞ୍ଚିଥିବା ବେଳେ ସବୁ ସମ୍ପତ୍ତିକୁ କବଳିତ କରି ନେଲେ । ଗାଁ ଭିତରେ ମଡ଼ାଟା ଦୁଇଦିନ ହେଲା ପଡ଼ିଲାଣି । ସେଥିକି କାହାର ନଜର ନାହିଁ । ଧର୍ମ କ'ଣ ସ୍ୱାର୍ଥକୁ ସହିବ । ଧର୍ମ ନାହିଁ । ଘୋର କଳିକାଳ । ବୁଝିଲ ପୁଅ-ଧର୍ମ ଥିଲେ କ'ଣ ଏପରି ଅଘଟନ ଘଟୁଥାନ୍ତା ।"

ଅଗାଧ ମିଶ୍ରେ ଏତିକି କହିଦେଇ ତାଙ୍କ ବାଟରେ ଅଗେଇ ଚାଲିଲେ ।

ମୁଁ ଆଗକୁ ମାଡ଼ି ଚାଲିଲି । ଛୋଟ କୁଡ଼ିଆଟିରେ ଆଶ୍ରମ କରି ସ୍ୱାମୀ ସତ୍‌ରୂପାନନ୍ଦ କେତେକ ଭକ୍ତ ମାନଙ୍କୁ ସକାଳୁ ରାମକୃଷ୍ଣ କଥାମୃତରୁ ଶୁଣାଉଥିଲେ । ସ୍ୱାମୀ ସତ୍‌ରୂପାନନ୍ଦନ ଏ ଗାଁରେ ରହିବାର ଦଶ ବର୍ଷ ହୋଇଗଲାଣି । ଛୋଟିଆ ଆଶ୍ରମଟିଏ କରି ଅଳ୍ପ କିଛି ଆୟରେ ଚଳିଯାଉଛନ୍ତି । ଅନାଥ ପିଲାମାନଙ୍କୁ ଆଶ୍ରମରେ ରଖି ସେମାନଙ୍କର ଭରଣ ପୋଷଣ ତଥା ଶିକ୍ଷାର ଦାୟିତ୍ୱ ନେଇ କାର୍ଯ୍ୟ କରୁଛନ୍ତି ।

ରାମକୃଷ୍ଣଙ୍କ ପୁଷ୍ପମାଲ୍ୟ ଶୋଭିତ ଫଟୋ ନିକଟରେ ବସିରହି ଏକ ଲୟରେ କହି ଚାଲିଛନ୍ତି ସେ । ରାମକୃଷ୍ଣ କହୁଥିଲେ, "ସଂସାର କର୍ମକ୍ଷେତ୍ର କର୍ମ କରୁ କରୁ ତେବେ ଜ୍ଞାନ ହୁଏ । ଗୁରୁ କହୁଛନ୍ତି, ଏହିସବୁ କର୍ମକର, ଆଉ ଏହି ସବୁ କର୍ମ କର ନାହିଁ । ପୁଣି ସେ ନିଷ୍କାମ କର୍ମର ଉପଦେଶ ଦିଅନ୍ତି । କର୍ମ କରୁ କରୁ ମନର ମଇଳା ଚାଲିଯାଏ । ଭଲ ଡାକ୍ତରର ହାତରେ ପଡ଼ିଲେ ଔଷଧ ଖାଉ ଖାଉ ରୋଗ ହେଉଁନା କାହିଁକି, ଭଲ ହୋଇଯାଏ ।"

କାହିଁକି ସେ ସଂସାରରୁ ଛାଡ଼ନ୍ତି ନାହିଁ ? ରୋଗ ଭଲ ହେବ, ତେବେ ଛାଡ଼ିବେ । କାମିନୀ କାଞ୍ଚନ ଭୋଗ କରିବାର ଇଚ୍ଛା ଯେତେବେଳେ ଚାଲିଯିବ, ସେତେବେଳେ ଛାଡ଼ିବେ । ହାସପାତାଳରେ ନାମ ଲେଖାଇଲେ ପଳାଇ ଆସିବାର ଯୁ ନାହିଁ । ରୋଗରେ ଆଶଙ୍କା ଥିଲେ ଡାକ୍ତର ସାହେବ ଛାଡ଼ିବେ ନାହିଁ ।"

ମୁଁ ତାଙ୍କ ନିକଟରେ ପହଞ୍ଚି ନମସ୍କାର କଲି । ବସିବାକୁ ଇଙ୍ଗିତ ଦେଲେ । କିଛି ସମୟ ପରେ ଭକ୍ତମାନେ ଗୋଟିଏ ଗୋଟିଏ ହୋଇ ଚାଲିଗଲେ ।

"ସ୍ୱାମୀଜୀ ଶୁଣିଲେଣି—ଗାଁର ଉତ୍ତମ ମା'ଟି ଗତକାଲି ସନ୍ଧ୍ୟାଠାରୁ ମରି-ପଡ଼ିଛି । ଏପର୍ଯ୍ୟନ୍ତ କେହି ତାକୁ ଉଠାଇ ନାହାନ୍ତି ।

"ହଁ, ଏହିତ ସଂସାର । ଠାକୁରେ କହୁଥିଲେ,

"ଏ ସଂସାର ମଜାର କୋଠି,

ମୁଁ ଯେ ଖାଇପିଇ କିଏ ମଜାଲୁଟି ।"

ଲୋକମାନେ ଈଶ୍ୱରଙ୍କୁ ଭୁଲିଗଲେଣି । ମଣିଷକୁ ଭୁଲିଗଲେଣି । ଆପଣ ଜାଣିଛନ୍ତି କି ନାହିଁ, ମୁଁ ଜାଣେନି । ସେ ପିଲାଟି କାଲିଠାରୁ ସମସ୍ତଙ୍କୁ କେତେ ନେହୁରା ହେଲାଣି । ମାତ୍ର କେହି ଶୁଣୁ ନାହାନ୍ତି ତା କଥା । ତା କକା କହିଲା, "ଶଳାଟା ମରିଗଲା, ଛାଡ଼ି ପାଇଲା । ଜୀବନସାରା ଯେତେ କୁ-କର୍ମ କରିଥିଲା ତାର ଫଳତ ଭୋଗ କରିଲା । ମଡ଼ା ଆମର କିଏ ଉଠାଇବ । ବଞ୍ଚିଥିଲାବେଳେ ଟଙ୍କାଟିଏ ଦେବାକୁ ହାତ ବଢ଼ୁ ନଥିଲା । ତା ପୁଅ ତା ସମ୍ପତ୍ତି ଖାଇବ । ଆମେ କାହିଁକି ମଡ଼ା ଉଠାଇବୁ ।"

"ସେ ଛୁଆଟା ତୁଣ୍ଡରେ ଦି'ଟା କେହି ଖାଇବାକୁ ଦେଲେନି ଏପର୍ଯ୍ୟନ୍ତ । ଆମେ ମଡ଼ା ଉଠେଇ ଦେଇଆନ୍ତୁ ମାତ୍ର ଗାଁ କଥା ଆପଣ ଜାଣନ୍ତି । ସେଇଥିପାଇଁ ମୁଁ ଅପେକ୍ଷା କରି ରହିଛି ।"

ତା'ର ଦାଦା କହିଲେ, "ଛୁଆଟା ନା ବାଳକ । ତା ସମ୍ପତ୍ତି ବିକ୍ରୀ ନ ହେଲେ ଶୁଦ୍ଧିକାର୍ଯ୍ୟ କେମିତି ହେବ । ବିଧବା ମାଇକିନାଟା ଆଉଗୋଟେ କାହାକୁ ଠାଇ ହେବାକୁ ଚାଲିଗଲାଣି । ବୟସ ଅଛି । ଏଠି ପଡ଼ିରହିବ କାହିଁକି ? ଉତ୍ତମ ବଞ୍ଚିବାବେଳେ ତ ଆଣି ଘରେ ଟୋକା ଭର୍ତ୍ତି କରୁଥିଲା । ସୁକୁ ସୁକୁ ହେବାବେଳକୁ ଗାଁର ସେହି କନ୍ଦନର ଟୋକା ସଙ୍ଗରେ ଚାଲିଗଲା । ବର୍ତ୍ତମାନ ଆମେ କ'ଣ କରିବୁ । କିଛି ଯଦି ଭବିଷ୍ୟତ ଥିଲେ ପଇସା ଖର୍ଚ୍ଚ କରିହୋଇ ପାରନ୍ତା । ଆମକୁ ଆମ ପରିବାର ଭାର । ଆମେ ଅନ୍ୟ କଥା ସମ୍ଭାଳିବୁ କେମିତି ଏମିତି ନାନା କଥା । ଛୋଟ ପିଲାଟା । ସେ କଣ ବୁଝୁଛି । ମଲା ବାପର ଶରୀର ପାଖରେ ପଡ଼ି ରହିଛି । କାନ୍ଦୁଛି ଜହଳ ବିକଳ ହୋଇ ଭୋକ ଉପାସରେ । ଆପଣଙ୍କୁ କିଛି କରିବାକୁ ହେବ ।"

ସ୍ୱାମିଜୀ ଉଠି ଛିଡ଼ାହେଲେ । ଦୁହେଁ ସାଙ୍ଗହୋଇ ଉତ୍ତମ ମାଝି ଘରଆଡ଼େ ଚାଲିଲୁ । ଘର ଭିତରେ ଲେମ୍ବୁ କୋଣ୍ଟ ଶେଯ ଉପରେ ଉତ୍ତମ ମାଝିର ନିର୍ଜୀବ ଶରୀର । ପଞ୍ଜୁରୀରୁ ପ୍ରାଣ ପକ୍ଷୀଟି ଉଡ଼ିଯାଇଛି । ଛୋଟ ପିଲାଟା କାନ୍ଦି କାନ୍ଦି ବାପ ମୁହଁ ଉପରେ ମୁହଁ ମାଡ଼ି ପଡ଼ିଛି । ଆଜକୁ ଦୁଇଦିନ ହେଲାଣି ପେଟରେ ତା'ର କିଛି ପଡ଼ିନି । ସେ କ'ଣ ଜାଣିବ ବାପ ମରିଛି କି ବଞ୍ଚିଛି । ଶୁଦ୍ଧି କ୍ରିୟା ସେ କିପରି କରି ପାରିବ ? ଜନ୍ମ ମରଣ ସହିତ ତା'ର ସମ୍ପର୍କ କ'ଣ ? ଛୋଟ ପିଲାଟି ନିକଟରେ ସବୁ ସମାନ-ଜାତି ବିଚାର କ'ଣ-ଧନଲାଭ କ'ଣ ?"

ସ୍ୱାମିଜୀଙ୍କ ମୁହଁକୁ ମୁଁ ଅନାଇଲି । ଅପଲକ ନୟନରେ ସେ ଚାହିଁ ରହିଥିଲେ ପିଲାଟିକୁ । ଟେକିନେଲେ ଛାତି ଉପରକୁ । ସ୍ୱଗତୋକ୍ତି କରିବା ଭଳି କହିଲେ, "ତୁମେ ଈଶ୍ୱରଙ୍କ ସନ୍ତାନ । ତୁମପାଇଁ ସ୍ୱାମୀ ବିବେକାନନ୍ଦଙ୍କର ଆବିର୍ଭାବ । ଆସ୍, ମୋ କାନ୍ଧରେ ବସ । ମୁଁ ତୁମକୁ ମୋ କାନ୍ଧରେ ବସାଇ ମାୟା ସଂସାର ପଥରେ କଢ଼ାଇନେବି । ଆଲୋକର ସନ୍ଧାନ ଦେବି ।"

ମୁଁ କୋକେଇ ବନ୍ଧା କାର୍ଯ୍ୟରେ ଲାଗି ଯାଇଥିଲି । ସ୍ୱାମିଜୀ ଓ ମୁଁ ଶରୀରକୁ ଉଠାଇ ବାଉଁଶରେ ତିଆରି ହୋଇଥିବା କୋକେଇରେ ଥୋଇଦେଇ କାନ୍ଧକୁ

ଉଠାଇଲୁ । ପିଲାଟି ଆଖିରୁ ଲୁହ ଶୁଖି ଯାଇଥିଲା । ସଂସାରର ଅଙ୍କାବଙ୍କା ଗଡ଼ପଥରେ ଚାଲିବାପାଇଁ ସେ ଯେପରି ସଙ୍କଳ୍ପବଦ୍ଧ ହୋଇଥିଲା । ମୁଁ ଯନ୍ତ୍ରବତ୍ କହି ଚାଲିଥିଲି, 'ରାମ ନାମ ସତ୍ୟହେ ………ରାମ ନାମ ସତ୍ୟ' ହେ …। ବୋହିନେଇ ଚାଲିଥିଲୁ ଉତ୍ତମ ମାଟିର ଶରୀରଟିକୁ । ଆମ ପଛରେ ଗାଁର ଅନେକ ଲୋକ । ସମସ୍ତେ ଏକାବେଳେ କହୁଥିବାର ଶୁଣାଗଲା, ମଲା ତ ମଲା ଛୁଆଟାକୁ ଅନାଥ କରି ଚାଲିଗଲା ।'' ସେ କିନ୍ତୁ ଦୃଢ଼ ସହକାରେ ସ୍ୱାମୀଜୀଙ୍କ ପାଦ ସହିତ ପାଦ ମିଳାଇ ଚାଲିଥିଲା । ମୁଁ ବାରମ୍ବାର 'ରାମ ନାମ ସତ୍ୟହେ' କହି ଚାଲିଥିଲି ।



# କପୋତୀର ଛିନ୍ନ ପକ୍ଷ

ମେଘଘେରା ଆକାଶଟାକୁ ଚାହିଁଦେଇ ସୁସ୍ମିତା ଚହିଁକ ଉଠିଲା । ଏଇ ବୋଧହୁଏ ବର୍ଷା ହେବ ! ସମୟ ମାତ୍ର ଚାରିଟା । ଅଫିସ୍ ସାରିବା ବେଳକୁ ବର୍ଷାଟା ନିହାତି ମାରାତ୍ମକ ଭାବରେ ହଇରାଣ କରି ପକାଉଛି ସମସ୍ତଙ୍କୁ କିଛିଦିନ ହେଲା । ବର୍ଷାଦିନଆଁ ବର୍ଷା; ମାତ୍ର ଛଆଁ ଲଗା ବର୍ଷାଟାକୁ ଆଉ କ'ଣ ସମୟ ମିଳୁନି ଯେ ଠିକ୍ ଅଫିସ୍ ସାରିବାବେଳକୁ ଆରମ୍ଭ ହୋଇଯାଉଛି । ଅଫିସ୍ ଆସିବା ଓ ଫେରିବାବେଳେ ବର୍ଷା ନ ହୋଇ ଅନ୍ୟ ଯେ କୌଣସି ସମୟରେ ହେଲେ ସୁସ୍ମିତାର କିଛି ବ୍ୟସ୍ତ ହେବାର ନଥିଲା !

ଅଫିସ୍ ସାରିବାବେଳକୁ ଆହୁରି ଘଣ୍ଟେ ବାକି । ନୂଆ ହୋଇ ପ୍ରମୋଶନ ପାଇଥିବା ମ୍ୟାନେଜରଟାର ସବୁକଥାରେ ଖାଲି ବକ୍ ବକ୍ । ଟିକିଏ ଏପାଖ ସେପାଖ ହେଲାବେଳକୁ ତାଗିଦା । କିଏ ଏବେ କାମ ନ କରୁଛି ଯେ ! ଦିନସାରା ବସିବସି ଅଣ୍ଟାପିଠି ଦରଜ ହୋଇଯାଉଛି । ସେ'ବା କାହା ସଙ୍ଗରେ ଗପ କରିବ ! ଅଫିସ୍‌ରେ ତିନିଜଣ ଝିଅଙ୍କୁ ଛାଡ଼ିଦେଲେ ଅନ୍ୟମାନେ ସବୁ ପୁଅପିଲା । ତା ବ୍ୟତୀତ ଅନ୍ୟ ଦୁହେଁ ମ୍ୟାରେଡ୍ । ରେଖା ଏଇ ଅଳ୍ପଦିନ ତଳେ 'ଲଭମ୍ୟାରେଜ୍' କରି ପକାଇଲା । ସେ ଦିନ 'କମାଥ ରେଷ୍ଟୁରାଣ୍ଟ' ଭିତରେ ବସି ସେ ଗପୁଥିଲା ତାଙ୍କ ପ୍ରେମ କାହାଣୀ । କଲେଜ ଲାଇଫ୍‌ରେ କାଳେ ଅନେକ ଟୋକା ତା ପଛରେ ଗୋଡ଼ାଉଥିଲେ, କିନ୍ତୁ ତାକୁ ପସନ୍ଦ ହୋଇଥିଲା କେବଳ ସୁରେଶ । ସୁରେଶ ରେଖାକୁ ପ୍ରଥମେ ଧରାଛୁଆଁ ଦେଉ ନଥିଲା । କିନ୍ତୁ ରେଖା ତାକୁ ଧମକ ଦେଇ କହିଲା ତାକୁ ସୋସାଇଟିରେ 'ଏକସ୍‌ପୋଜ୍' କରିବ । ତା'ର ଓ ସୁରେଶର ଫଟୋଗୁଡ଼ାକୁ ଧରି ସୁରେଶ ଉପରେ ଚାପଦେବା ଫଳରେ ସେ ବାଧ୍ୟ ହେଲା ବାହା ହେବାକୁ ।

ସୁରେଶ ଆଦିବାସୀ ଟୋକା । ବଳିଷ୍ଠ ଚେହେରା । କଲେଜରେ ସେତେ ଭଲ ନ ପଢ଼ୁଥିଲେ ବି 'ରିଜର୍ଭ କୋଟା'ରେ 'ଆଲାଇଡ୍' ପାଇ ଏବେ ଇନ୍‌କମ୍‌ଟ୍ୟାକସ ଅଫିସର । କାର ଧରି ଆସୁଛି ରେଖାକୁ ନେଇ ଯିବାକୁ । କେତେଥର ତାକୁ ସୁରେଶ କହିଲାଣି ଚାକିରିଟା ଛାଡ଼ି ଦେବାକୁ, ମାତ୍ର ରେଖା

ମନାକରୁଛି । ଗୋଟେ କିଛି 'ଇନ୍‌ଗେଜ୍‌ମେଣ୍ଟ' ତ ଆବଶ୍ୟକ । ଅଫିସ୍‌ରେ ରେଖାର ଫୁଟାଣି ସବୁଠି ବେଶି, ହେଲେ କାମ କରୁଛି କମ୍ । ଅଫିସର୍‌ମାଇଙ୍କର ଇନ୍‌କମଟ୍ୟାକ୍ସବାଲାଙ୍କ ପ୍ରତି ଭୟ ତ ରହିଛି ।

ବନିତା କିନ୍ତୁ ରେଖାଠାରୁ ଠିକ୍ ଓଲଟା । ବାହା ହେବାର ଦୁଇବର୍ଷ ହେଲଣି, ଏବେ ତାର ଗୋଟେ ପୁଅଟେ । ପାଞ୍ଚ ବାଜିବା ପୂର୍ବରୁ ଘରକୁ ଚାଲିଯାଏ । ସବୁଦିନେ ତାର ଗୋଟିଏ କଥା, "ସାର୍ ! ପୁଅ କାନ୍ଦିବ । ଆୟାଟେ ରଖିଛୁ ଯେ ସେ ପୁଅକୁ ରଖିଛୁ ଯେ ସେ ପୁଅକୁ ସମ୍ଭାଳି ପାରୁନାହିଁ । ବାବୁ ପୁଣି ଠିକ୍ ପାଞ୍ଚଟାବେଳକୁ ଆସି ହାଜର ମୋ ହାତରୁ ଚା' ପିଇବାପାଇଁ କିଟିଏ ଚଞ୍ଚଳ ନଗଲେ ।" ତା ପରେ ନାନାଦି ଦାମିକିଆ ଜିନିଷ । ତା ସ୍ୱାମୀ ଜଣେ ବଡ଼ ବ୍ୟବସାୟୀ ମାସକୁ ଆୟ ହଜାର, ହଜାର । ସେ ଚାକିରି କରୁଛି ଖାଲି ସଉକରେ ।

ସୁପ୍ରିତା ତା' ସାଙ୍ଗମାନଙ୍କର କଥା ଶୁଣୁଥିଲା । ବର୍ଷା ଝିପ୍ ଝିପ୍ ହୋଇ ପକାଇବାକୁ ଆରମ୍ଭ କରି ଦେଇଥିଲା । ମ୍ୟାନେଜର ଆଡ଼କୁ ଟିକିଏ ଚାହିଁଲା ସେ । କ'ଣ ବକର ବକର କରୁଛନ୍ତି କାହା ସାଙ୍ଗରେ ଏଇମିତି ସବୁବେଳେ । ମାଇକିନାଗୁଡ଼ାକ କିଛିଟା କ୍ଷମତା ପୋଜିସନ୍ ପାଇଗଲେ ଏଇମିତି ଭଡ଼୍ ଭଡ଼୍ ହୁଅନ୍ତି । ମନେ ମନେ ବିରକ୍ତ ହୋଇ ଉଠୁଥିଲା ସେ । ବର୍ଷାଟା ଆଜି ଗଳ୍ପବେଳକୁ ପୁଣ ହଇରାଣ କରି ପକାଇବ ।

ଘଣ୍ଟାକୁ ଚାହିଁଲା । ପାଞ୍ଚଟା ବାଜିବାକୁ ମାତ୍ର ଦଶମିନିଟ୍ ବାକି । କାଗଜପତ୍ରକୁ ଟେବୁଲ ଡ୍ରୟର ଭିତରେ ଭର୍ତ୍ତିକରି ଚାବିଟାକୁ ପିଅନକୁ ଡାକି ଦେଇଦେଲା ।

ଭ୍ୟାନିଟି ବ୍ୟାଗଟିକୁ ବାହାରକରି ଓହଲାଇଲା କାନ୍ଧରେ ଓ ଟେବୁଲ ଛାଡ଼ି ଛିଡ଼ାହେଲା ।

ସେତେବେଳକୁ ପ୍ରାୟ ସମସ୍ତେ କାର୍ଯ୍ୟସାରିଦେଇ ଗପ ଆରମ୍ଭ କରି ଦେଇଥିଲେ । ବର୍ଷା ଜୋରରେ ପିଟୁଥିବା ହେତୁ କେହି ବାହାରକୁ ବାହାରୁ ନଥିଲେ ସେ ପର୍ଯ୍ୟନ୍ତ । ସ୍କୁଟର, ମଟର ସାଇକଲ ଇତ୍ୟାଦି ବର୍ଷାରେ ଭିଜୁଥିଲା । ଆଗକୁ ପାଦ ବଢ଼ାଇଲା ସୁପ୍ରିତା । 'ମ୍ୟାଡ଼ମ୍ ! ଟିକିଏ ରହିଯାଆନ୍ତୁ ନା । ବର୍ଷାଟା ଜୋରରେ ପିଟୁଛି । କମିଗଲେ ଯିବେ ।" ଫେରି ଚାହିଁଲା ସେ । ଅବିନାଶବାବୁ ତା ଆଡ଼େ ଚାହିଁ କହୁଛନ୍ତି ।

ଅବିନାଶବାବୁ ତାର ସହକର୍ମୀ । ପ୍ରାୟ ଏକାସାଙ୍ଗରେ ଚାକିରିରେ ଜଏନ୍ କରିଛନ୍ତି । ଦୁଇଟି ପିଲାର ବାପ । ସବୁବେଳେ ନିଅଣ୍ଟ । ମାସର ଶେଷଆଡ଼କୁ ତାଙ୍କୁ

ଧାର ମାଗନ୍ତି । ପତ୍ନୀଙ୍କ ଶର୍ମିଷ୍ଠାଙ୍କୁ ନଦେଲେ ନଚଳେ । ଅତି କାକୁସ୍ଥ ହୋଇ କହିବେ "ମ୍ୟାଡ଼ମ୍ ! ଆପଣଙ୍କର ସିନା କିଛି ଚିନ୍ତା ନାହିଁ, ବାହାହୋଇ ଆମେ ଯେଉଁ କଷ୍ଟ ଭୋଗୁଛୁ । ସ୍କୁଲଶିକ୍ଷା ମାଇକିନାଟେ ବାହା ହୋଇଥିଲେ ଭଲ ହୋଇଥାନ୍ତା । ସ୍ତ୍ରୀଣାନ୍ତକୁ ଦେଖୁନାହାନ୍ତି କେମିତି ପ୍ରତିଦିନ ଆସୁଛି ଅଫିସରୁ ତା ସ୍ତ୍ରୀକୁ ନେବାକୁ !

କିଛି କହି ପାରେନି ସେ । ମନିବ୍ୟାଗରୁ କାଢ଼ି ଧରାଇଦିଏ ଶର୍ମିଷ୍ଠା ଅବା ପତ୍ନୀଙ୍କୁ । ସମସ୍ତଙ୍କର ଯେପରି କିଛି ନା କିଛି ପ୍ରୋବ୍ଲେମ, କେବଳ ତା ଛଡ଼ା କିଏ ବୁଝୁଛି କାହା କଥା ଆଜିକାଲି !

ଅବିନାଶବାବୁ କିନ୍ତୁ ବିଶେଷ ମନ୍ଦ ସ୍ୱଭାବର ଲୋକ ନୁହନ୍ତି । କେବଳ ଅଭାବ ତାଙ୍କୁ ହୀନିମନ୍ୟରେ ପକାଇ ଦେଇଛି । ବାହା ହେବାର ଦୁଇବର୍ଷ ଭିତରେ ଦି'ଟା ପୁଅଙ୍କ ସହିତ ରୋଗିଣା ସ୍ତ୍ରୀଟା । ସୁସ୍ମିତା ମନରେ ତାଙ୍କ ପ୍ରତି ସମୟେ ସମୟେ ଦୟା ଆସେ ।

ପ୍ରଥମେ ସ୍ୱାକୁ ସାଥେଲେ ଅବିନାଶ ବାହାହୋଇ ନଥିଲେ । ସେ ଦିନେ ଦିନେ ଭାବେ—ଅବିନାଶଙ୍କ କଥା ବୁଝିବ କେବେ କୈଫିବ ସାଙ୍ଗହୋଇ ସ୍ୱ'ମଧ୍ୟ ପିଇଛନ୍ତି । କ୍ୟାଣ୍ଟିନରେ ବସି ରାଜ୍ୟସାରା ଖବର ଆଲୋଚନା କରିଛନ୍ତି । ମାତ୍ର ସମ୍ପର୍କଟା ବୋଧହୁଏ ସେତିକିରେ ରହିଗଲା ।

ବାହାରେ ଏବେବି ବର୍ଷା ଓ ପବନର ତାଣ୍ଡବ । ଘଣ୍ଟାରେ ପାଞ୍ଚଟା ପଚିଶମିନିଟ୍ ହେଲାଣି । ବସ୍‌ଷ୍ଟାଣ୍ଡରୁ ବସ୍ ଧରି ତାକୁ ଯିବାକୁ ହେବ ପାଞ୍ଚକିଲୋମିଟର । ବେଶ୍ କିଛି ସମୟ ଅପେକ୍ଷାକଲେ ଅସୁବିଧା ସୁସ୍ମିତା ଛତାଟିକୁ ହ୍ୟାଣ୍ଡବ୍ୟାଗରୁ ବାହାରକରି ବାହାରି ପଡ଼ିଲା ପଦାକୁ । ବର୍ଷାପାଣିରେ ରାସ୍ତା ଅଧିକାଂଶ ଜାଗାରେ ବୁଡ଼ିଯାଇଛି ସ୍ୱରକଡ଼ରୁ ପାଣି ଗୁଡ଼ୁଛି । ଗାଡ଼ିଟାଏ ହିଡ଼୍‌ରେ ତା' କଡ଼ଦେଇ ଘଷି ହୋଇ ଚାଲିଗଲା । ଲୁଗାଟା ପାଣି ଛିଟିକାରେ ଜୁଡ଼ୁବୁଡ଼ୁ ହୋଇଗଲା । ସ୍ୱରକଡ଼କୁ ଚାହିଁଲା ସୁସ୍ମିତା । ଦୋକାନ ଦୁଆର ମୁହଁରେ ଲୋକଗୁଡ଼ାକ ଡମାଡମା ଆଖିରେ ଚାହିଁଛନ୍ତି ତାକୁ ।

ତରବରରେ ଆସି ପହଞ୍ଚିଲା ବସ୍‌ଷ୍ଟାଣ୍ଡରେ । ଅନେକ ଗହଳି । ଭିଡ଼ ଠେଲି ପଶିଗଲା ବସ୍ ଭିତରେ । ଜାଗା ମୋଟେ ନାହିଁ । ଛିଡ଼ା ହେବାକୁ ପଡ଼ିଲା । ଟୋକାଦି'ଟା ତାକୁ ଚାପି ଦେଉଥିଲେ ବେଳେବେଳେ । ମନେ ମନେ ବିରକ୍ତ ହୋଇ ଉଠୁଥିଲା । ଏମାନଙ୍କୁ ରାସ୍ତାଘାଟରେ ଏ ଅଭଦ୍ରାମୀରୁ କିଏ ଯେ ମିଳେ !

ନଅନମ୍ବରର ଫ୍ଲାଟର ଓ୍ୱାନ୍ ଆର୍ ଘରଟି, ମାସକୁ ଶହେଟଙ୍କା ଭଡ଼ାରେ ନେଇଛି । ଷ୍ଟୋଭରେ ରୋଷେଇ କରି ଖାଇଦିଏ । ଦିନେ ଦିନେ ପାଉଁରୁଟି କି

ବସ୍ତୁଟିରେ ମଧ୍ୟ ଚାଲିଯାଏ । ଖୁବ୍ ବେଶି ପାଞ୍ଚଶହ ଟଙ୍କାରେ ତାର ମାସିକ ଖର୍ଚ୍ଚରେ କାଟେ, ଅବଶିଷ୍ଟ ପଠାଇଦିଏ ଘରକୁ । ଶଶୀଦନଗରଠାରେ ଓହ୍ଲାଇଲା ବସ୍‌ରୁ । ଅନେକଙ୍କ ଆଖି ତା ଉପରେ ଲାଖି ରହିଥିଲା । କେମିତି ଲୋକ ଏଗୁଡ଼ାକ କେଜାଣି । ତାର ନିଜ ଅଜାଣତରେ ଛାତି ଉପରେ ଆଖିଟା ବୁଲି ଆସିଲା । ଆଃ, କି ଅସମ୍ଭବଭାବେ ଲୁଗାଟା ଓଦା ହୋଇ ଦେହରେ ଜଡ଼ାଇ ହୋଇଯାଇଛି । ଭ୍ୟାନିଟି-ବ୍ୟାଗ୍‌ଟିକୁ ଛାତିଉପରେ ମାଡ଼ିଧରି ସେ ଧିରେ ଚାଲିବାକୁ ଲାଗିଲା ।

ଘରର ଦୁଆର ଖୋଲି ଲାଇଟ୍ ଜଳାଇଲା । ଝରକା କବାଟ ବନ୍ଦ । ଘରେ ସେ ଏକା ଏକା । ଓଦା ଶାଢ଼ୀ ଶାୟା ବ୍ଲାଉଜ ଖୋଲିଦେଇ ଫ୍ୟାନତଳେ ଠିଆ ହେଲା ସେ । ସାମନାରେ ବଡ଼ ଆଇନାଟାରେ ଗୋଟାପଣେ ଲଙ୍ଗଳା ଦେହଟା ତାର ଫୁଟି ଉଠିଥିଲା । ଏ ପର୍ଯ୍ୟନ୍ତ ସେ ନିଜ ଶରୀର ସମ୍ପର୍କରେ ସଚେତନ ନଥିଲା । ବୟସ ଗଡ଼ି ଗଡ଼ି ଆସି ସତେଇଶିରେ ପହଞ୍ଚିଲାଣି । ସୁସ୍ମିତା ନିର୍ନିମେଷ ନୟନରେ ଚାହିଁ ରହିଥିଲା ଅଇନାଆଡ଼େ । ବାହାରେ ବର୍ଷାର ଗତି ତୀବ୍ରବେଗରେ ବଢ଼ି ଚାଲିଥିଲା । ବର୍ଷାଦିନଟାରେ ମନଟା ତାର ବେଶି ବେଶି ଚଞ୍ଚଳବିକଳ ହୋଇପଡ଼େ କାହିଁକି କେଜାଣି ! ବସ୍‌ରେ ସେହି ଟୋକାଟା ତା ଦେହରେ ଲାଗିଯିବାବେଳେ ତାକୁ ସିନା ଖରାପ ଲାଗୁଥିଲା, ମାତ୍ର ମନ ଭିତରେ ଖୁସି ଲାଗୁଥିଲା । କେହି କ'ଣ ଏ ବର୍ଷା ଭିଜା ରାତିରେ ଆସି ତାକୁ ଆଉ ନିଜର କରିବନି !

ନାଁ, କେହି ଆଉ ଆସିବାର ନାହିଁ । ସତେଇଶି ବର୍ଷର ମାଇପିଟାକୁ କିଏ କାହିଁକି ବା ଛୁଇଁବ । ପ୍ରେମ ଷୋଳ ସତର ବର୍ଷରେ କରାଯାଏ । ବାପା ମା'ଙ୍କୁ କେତେ ଥରରେ କହୁଥିଲେ, "ଝିଅଟା କାହା ସହିତ ପ୍ରେମକରି ଯଦି ପଳାନ୍ତା, ମଣିଷ ବାହା ଦେବା ବୋଝରୁ ରକ୍ଷା ପାଇଯାଆନ୍ତା ।" ମନେ ମନେ ବିରକ୍ତ ହୋଇଥିଲା ସୁସ୍ମିତା ବୟସ ଥିବାବେଳେ ପ୍ରେମ କରିବାକୁ ଟିକିଏ ସୁବିଧା ସୁଯୋଗ ଦେଲେନି, ଏବେ ବୟସ ଗଲାବେଳକୁ ପ୍ରେମ ! କଲେଜରେ ପଢ଼ିବାବେଳର କଥା ତାର ମନେ ପଡ଼ିଲା । ତା ସାଙ୍ଗରେ ପଢ଼ୁଥିବା ଶୁଭଶ୍ରୀ ସହିତ ଥରେ ଚାଲିଯାଇଥିଲା ସିନେମା ଦେଖି । ଶୀତତାପ ନିୟନ୍ତ୍ରିତ ହଲ୍‌ରେ ବସି 'ବବି' ଫିଲମ୍ ଦେଖିବାବେଳେ ଶୁଭଶ୍ରୀର ସେ ଯେଉଁ ଦୁଷ୍ଟାମୀ, କିଛି କହିପାରି ନଥିଲା ସେ । ସେମାନେ ସୋ ପରେ ଘରକୁ ଫେରିଥିଲେ । ଶୁଭଶ୍ରୀ ତାକୁ ଛାଡ଼ିବାକୁ ଘରକୁ ଆସିଥିଲା । ବାପାଙ୍କ ସହିତ ଅଳ୍ପ ସମୟ କଥାବାର୍ତ୍ତା କରି ଚାଲିଗଲା ପରେ ବାପାଙ୍କର ଗର୍ଜନରେ ଘର କମ୍ପି ଉଠିଥିଲା । ଶୁଭଶ୍ରୀ ସହିତ ନ ମିଶିବାକୁ କଡ଼ା ନିର୍ଦ୍ଦେଶ ମିଳିଥିଲା । ବାପା, ସେଇ ବୋଧହୁଏ ଥିଲା ପ୍ରଥମ ଯୌବନରେ ପ୍ରେମ ଦିଆନିଆ ।

ବାହାରେ ବର୍ଷାଟେ ଗୁଡ଼ିବାର ସୂଚନା ନାହିଁ ଅଥଚ ଘର ଭିତରେ ତା ଦେହରେ ଯେପରି ନିଆଁ ଲାଗିଯାଇଛି । ଲୁଗା ପିନ୍ଧିବାକୁ ସେ ଆଦୌ ଚେଷ୍ଟା କରୁ ନଥିଲା । ତାକୁ ନିଜ ଉପରେ ବିରକ୍ତ ଲାଗୁଥିଲା । କାହିଁକି ସେ ଏତେ ବାଧ୍ୟ ଝିଅଭଳି ବାପାମା'ଙ୍କ କଥାମାନି ଚାଲିଛି, ସେ କଥା ତା ମନରେ ବାରମ୍ବାର ଆଘାତ ଦେଉଥିଲା । କେତେଦିନ ରୋଜଗାର କରି ପୋଷିବ ସେମାନଙ୍କୁ । ବୟସ ତାର ସତେଇଶି । ଆଉ କିଛିଦିନ ପରେ ମୁହଁରେ କଳାଗାର ଦେଖାଦେବ । ଏ ବୟସରେ ବାହା ହୋଇ ନପାରିଲେ, ଆଉ ତାକୁ କିଏ ବାହା ହେବ । ତାର କ'ଣ ମନ ନାହିଁ ଛୁଆଟେ ପାଇବାକୁ । ତାର କ'ଣ ମନ ହେଉନି କୌଣସି ପୁରୁଷ ଦେହଟାକୁ ଜଡ଼ାଇ ଧରିବାକୁ ! ରେଖା ତା ସ୍ୱାମୀ ପାଖରେ ଶୋଇ ଉଠାଇଥିବା ଫଟୋଗୁଡ଼ିକୁ ଦେଖାଉଥିଲା, ତା ଦେହ ଶୀତେଇ ଉଠୁଥିଲା ।

ତା ନିଜ ଉପରେ, ବାପା ମାଙ୍କ ଉପରେ ତାର ବିରକ୍ତି ବଢ଼ି ଯାଉଥିଲା । ପାଠ ପଢ଼ିବାବେଳେ କେତେ ଯେ ପରିଶ୍ରମ ସେ ନ କରିଛି; ତା ସହିତ ଘରକାମ । ମାତ୍ର କେଉଁଥିପାଇଁ ? ଅଫିସ୍‌ରେ ନଥିଲାବେଳେ ଟୋକାଗୁଡ଼ାକୁ କୁହାକୁହି ହୁଅନ୍ତି, "ସୁପ୍ରିତା ମାତାଜୀ ହେବ ।" ସତରେ ସେ କ'ଣ ମାତାଜୀ ହେବ, ଚିରଦିନ କ'ଣ ସେ ଏମିତି ରହିଯିବ ! ତା'ର ଏଇ ଦେହଟା କ'ଣ ଭୋଗ୍ୟ ହେବନି । ସେ ଆଉ କିଛି ଭାବି ପାରିଲାନାହିଁ । ଆଖିରୁ ତାହାର ଟପ୍‌ଟପ୍ ଲୁହ ବୋହି ପଡ଼ିଲା । ପଙ୍ଖାଟା ଜୋରରେ ବୁଲୁଥିଲେ ବି ଦେହରୁ ଝାଳ ଗମ ଗମ ହୋଇ ବାହାରୁଥିଲା । ଖାଇବା କଥା ପ୍ରାୟ ସେ ଭୁଲି ଯାଇଥିଲା । କେତେବେଳେ ସେ ଶୋଇ ପଡ଼ିଥିଲା ସେ ଜାଣେନି । ସ୍ୱପ୍ନରେ ତା' ଆଖି ଆଗରେ ନିଜ ଜୀବନର ଘଟଣାମାନ ଭାସି ଉଠିଲା ।

ସକାଳ କେତେବେଳେ ହେଲା ସେ ଜାଣେନା ମାତ୍ର ସାତଟା ବାଜିବାର ଆଲାର୍ମ ତା'ର ନିଦ୍ରାରେ ବ୍ୟାଘାତ ଘଟାଇଲା । ଆଖି ମଳି ମଳି ଉଠିଲା ସେ । ମୁହଁ ହାତ ଧୋଇ, ଚା' କପେ ପିଇଦେଲା । ମନଟା ଯେପରି ତାକୁ ଉଲ୍ଲାସ ଲାଗୁଥିଲା । ଗତ ରାତିରେ ତାକୁ କିଛି ମିଳିଯିବା ପରି ସେ ଅନୁଭବ କଲା । ସେ ଯେପରି ନିଶ୍ଚିତ କରି ନେଇଥିଲା ଯେମିତି ହେଉ ସେ ମାତୃତ୍ୱ ପାଇବ ଏବଂ ସେଥିପାଇଁ ଯେତେ ଗର୍ହିତ କାର୍ଯ୍ୟ କଲେ ମଧ୍ୟ ତା' ମନରେ ଦୁଃଖ ବା ଅନୁଶୋଚନା ହେବନାହିଁ । ପ୍ରଥମରେ ଘରକୁ ଚିଠି ଲେଖିବାକୁ ଆରମ୍ଭ କରିଦେଲା । ସେ ଲେଖିଦେଲା; ଘର ସହିତ ତା'ର ସମସ୍ତ ସମ୍ପର୍କ ସେ ଆଜିଠାରୁ ଛିନ୍ନ କରିଛି । ତା'ପାଇଁ, ତା' ବାହାଘରପାଇଁ ବ୍ୟସ୍ତ ନ ହେବାକୁ ସେ ବାପା ମା'ଙ୍କ ପରିଷ୍କାର ଜଣାଇ ଦେଲା । ଏପରି ମଧ୍ୟ ଲେଖିଥିଲା, "ତୁମ ଝିଅ ଆଜିଠାରୁ ତୁମପାଇଁ ମୃତ । କାନ୍ଦିବ ନାହିଁ, ଖୋଜିବ ନାହିଁ ଓ ପରିଶ୍ରମ କରି ଏଠାକୁ ଆସି ଅଯଥା ବିରକ୍ତ କରିବନି ।"

ଚଟି ଲେଖି ସାରି ଶେଷେଇ ପରେ ପଣି ପରିବାପନ୍ତ ଇତ୍ୟାଦି ଭରଣି ନେଲା । "ନାଁ, କିଛି ନାହିଁ । ବଜାରକୁ ଯାଇ ଆଣିବାକୁ ହେବ ।" ବ୍ୟାଗଟିକୁ ହାତରେ ଓହଳାଇ ମାର୍କେଟ ଆଡ଼କୁ ଆଗେଇଲା । ଯାହା ଯାହା ପରିବା ମିଳିଲା, ସବୁକୁ ଏକାଠି ଧରି ଫେରିଆସିଲା ବସାକୁ ।

ଧଳା କାଗଜ ଖଣ୍ଡିଏ କାଢ଼ି ଲେଖିଲା ଚିଠି ଟିଏ—ତା'ର ସହକର୍ମୀ ବନ୍ଧୁ ଅବିନାଶଙ୍କ ପାଖକୁ । ତାଙ୍କୁ ଅନୁରୋଧ କଲା ସନ୍ଧ୍ୟାରେ ତା' ଘରକୁ ଆସିବାକୁ । ଚିଠିଟିକୁ ଧଳା ଲଫାପାରେ ବନ୍ଦ କରି ପାଖରେ ରହୁଥିବା ଅନ୍ୟ ଜଣେ ସହକର୍ମୀଙ୍କ ହାତରେ ଦେଇଦେଲା ଏବଂ କ୍ୟାଜୁଆଲ ଲିଭ ଦରଖାସ୍ତଟା ମଧ୍ୟ ପଠାଇବାକୁ ଭୁଲିଲା ନାହିଁ ।

× × × ×

ଘରଟା ଅନେକ ଦିନ ହେଲା ଅଳନ୍ଦୁରେ ଭର୍ତ୍ତି ହୋଇଯାଇଥିଲା । ଝାଡ଼ୁଟିଏ ଦ୍ୱାରା ତାକୁ ସଫା କଲା ସେ । ବିଛଣାଟିକୁ ପରିଷ୍କାର କରି କଲିକତାରୁ ଆଣିଥିବା ବେଡସିଟଟିକୁ ଲମ୍ବାଇ ଦେଲା । ଶେଷେଇର ଏକ ତାଲିକା କରି ଗୋଟିକ ପରେ ଗୋଟିଏ ପ୍ରସ୍ତୁତ କରିବାକୁ ଲାଗିଗଲା ।

ଟେବୁଲ ଘଣ୍ଟା ପାଞ୍ଚଟା ବାଜିବାର ସଙ୍କେତ ଦେଲା । ଆଉ ଅଳ୍ପ ସମୟ ପରେ ଅବିନାଶ ତା' ଘର ପାଖରେ ପହଞ୍ଚିବେ । କ'ଣ ସେ କହିବ ତାଙ୍କୁ ? କାହିଁକି ସେ ତାଙ୍କୁ ଡାକିଛି ? ମନେ ମନେ ଗ୍ରହି ନେଇଥିବା କଥାଗୁଡ଼ିକୁ କହି ପାରିବତ ? ଟିକିଏ ପ୍ରାକ୍ଟିସ କଲେ କ୍ଷତି କ'ଣ ? ଆଇନା ସାମନାରେ ବସିପଡ଼ି, ମୁଣ୍ଡବାଳକୁ ପୁରିପୁରି ଫିଟାଇ ଦେଇ ସ୍ୱଗତୋକ୍ତି କରିବା ଭଳି ସେ କହି ଚାଲିଲା, "ଅବିନାଶ ! ମୁଁ ତୁମକୁ ଭଲପାଏ, ତୁମକୁ ଭଲପାଏ, ତୁମକୁ ଅଫିସରେ ଦେଖିବାଦିନୁ ମନେ ମନେ ପ୍ରେମ କରେ । ବିବାହ କରିବାର କେତେ ଆଶା ଥିଲା ମୋର । ମାତ୍ର ମୁଁ ମୁହଁ ଖୋଲି କହି ପାରିଲେ ନାହିଁ । ତୁମ ସୁଖର ସଂସାର ଭିତରେ ମୁଁ ଏବେ ଦୁଷ୍ଟଗ୍ରହ ହେବାକୁ ଇଚ୍ଛା କରେ ନାହିଁ । ମାତ୍ର ତୁମକୁ ମୋର ଗୋଟିଏ ମିନତି, ଗୋଟିଏ ଅନୁରୋଧ ରଖିବାକୁ ହେବ । ଜୀବନର ସତେଇଶି ପାହାଚ ଉପରେ ଛିଡ଼ା ହୋଇ ତୁମକୁ ଏ ଅନୁରୋଧ କରୁଛି । ମୋର ଏହି ଅଫୁଟା ସାଇତା ଫୁଲବନକୁ ତୁମେ ମଧୁବ୍ରତୀ ପରି ମନ୍ଥନ କର । ମୋତେ ମାତୃତ୍ୱର ଗୌରବ ଦିଅ । ମୁଁ ମା' ହେବାକୁ ଚାହେଁ । ତା'ର ବାପା ଓ ମା'ର ପରିଚୟ ମୁଁ ନିଜେ । ମୁଁ ତୁମ ସନ୍ତାନକୁ ମୋ ଜଠରରେ ଧାରଣ କରିବାକୁ ଚାହେଁ । ମୋର ସନ୍ତାନ ତୁମ ଉପରେ ଆଦୌ ବୋଝ ହେବନାହିଁ ।

ଅବିନାଶ ! ତୁମେ ନିଷ୍ଠୁର ପାଶବ, ତୁମ ପୌରୁଷର ବଢ଼ିମାରେ ମୋ ଯୌବନକୁ ଗ୍ରହଣ କରି ମୋତେ ମାତୃତ୍ୱ ଦେଇ ମୋ ଜୀବନକୁ ରକ୍ଷା କର ।" ବାହାରେ କାହାର ଠକ ଠକ ଶବ୍ଦ । ଅବିନାଶ ଆସିଗଲେ ଭାବି ଚମକିପଡ଼ି କବାଟଟିକୁ ଯାଇ ଫିଟାଇ ଦେଲା ସେ । ଦୁଧବାଲା ଦୁଧ ଦେଇଗଲା । କବାଟଟିକୁ ପୁଣି ବନ୍ଦକରି ଦେଇ ଆଇନା ପାଖରେ ବସି ସ୍ୱଗତୋକ୍ତି କରି ପୂର୍ବକଥାର ପୁନରାବୃତ୍ତି କରିବାରେ ଲାଗିଗଲା । ହଠାତ୍ କଲିଂବେଲର ଆୱାଜ । ଦରଜା ଖୋଲିବା ମାତ୍ରେ ହସି ହସି ଅବିନାଶ ଓ ତାଙ୍କର ସ୍ତ୍ରୀ ଘରକୁ ପଶି ଆସିଲେ ।

ଅବିନାଶଙ୍କ ସ୍ତ୍ରୀ ସୁରମା ଦେବୀ କହି ଚାଲିଥିଲେ, "ତୁମର ନିମନ୍ତ୍ରଣ ପାଇ ଆମେ ଚାଲିଆସିଲୁ । ତୁମେ ଆମକୁ ଏତେ ସାହାଯ୍ୟ କରୁଛ...।"

ସୁସ୍ମିତା କେବଳ ବୋକାଙ୍କପରି ଚାହିଁଥିଲା । ସେତେବେଳକୁ ଅବିନାଶର ପୁଅ ତା'ର ପଜଡ଼ା ବିଛଣାରେ ବୁଢ଼ିବାକୁ ଆରମ୍ଭ କରିଦେଇଥିଲା ।

ବାହାରେ ଭୀଷଣ ବର୍ଷା । ଓ ପବନ ଆରମ୍ଭ ହୋଇଯାଇଥିଲା ସେତେବେଳକୁ ।



# ଘଟଣା-ଅଘଟଣା

କୈଳାସଚନ୍ଦ୍ର କଡ଼ ଲେଉଟାଇଲେ । ନିଦ ଝମଣୀ ପତଳା ହୋଇ ଆସିଲାଣି । ଠିକ୍ ଭୋର ପାଞ୍ଚଟା ବେଳକୁ ନିଦ ଭାଙ୍ଗିଯାଏ ତାଙ୍କର । ଆରମ୍ଭ ହୁଏ ନିତିଦିନର ଘଟଣାବହୁଳ ଜୀବନ ।

× × × +

କୈଳାସଚନ୍ଦ୍ର ଚମ୍ପତି ମଧ୍ୟବୟସ୍କ ବ୍ୟକ୍ତି । ସକାଳ ପାଞ୍ଚଟା ନ ବାଜୁଣୁ ସେ ଉଠିପଡ଼ନ୍ତି ବିଛଣାରୁ । ସେ ପର୍ଯ୍ୟନ୍ତ ଶୋଇ ରହିଥାନ୍ତି ପତ୍ନୀ ଓ ପିଲାମାନେ । ଆଖି ମଳମଳ କରି ଗୁଣୁ ଗୁଣୁ ହୋଇ ଜଗନ୍ନାଥଙ୍କ ଜଣାଣରୁ ପଦେ ଅଧେ ବୋଲିବାରେ ଲାଗିଯାନ୍ତି । କାନ୍ଥ ଆଲମିରାରେ ଥିବା ଗୁଡ଼ାଖୁ ଖୋଜି ପକାନ୍ତି । ଆଖି ଲାଗି ରହିଥାଏ, ଗୋଟିଏ କୋଣରେ ଥିବା ପାଇଖାନା ଆଡ଼େ । କେତେବେଳେ ପାଇଖାନା ଖାଲି ହେବ ତାହା ହିଁ ଥାଏ ତାଙ୍କର ଚିନ୍ତା । କେବେ କେବେ ଘଣ୍ଟେ ଦୁଇଘଣ୍ଟା ତାଙ୍କୁ ଅପେକ୍ଷା କରିବାକୁ ପଡ଼େ ତାର କାରଣ ସେ ଭଡ଼ାରେ ରହୁଥିବା ଘରଟି ଅନେକ ବଡ଼ ଓ ତାର ଭିତରେ ଏକୋଇଶିଟି ପରିବାର ଚଳନ୍ତି । ସମସ୍ତଙ୍କ ପାଇଁ ସେ ଗୋଟିଏ ମାତ୍ର ପାଇଖାନା ଓ ପାଣି ପାଇପ୍ । ଭୁବନେଶ୍ୱରରେ ଅନେକ ଘର ଅଛି, ଯେଉଁଠି ପ୍ରତ୍ୟେକ ଘରେ ସ୍ୱତନ୍ତ୍ର ପାଇଖାନା । ତାହା କୈଳାସବାବୁଙ୍କ ଭାଗ୍ୟରେ ନାହିଁ । ସେସବୁ ବଙ୍ଗଳାମାନଙ୍କରେ ବଡ଼ ବଡ଼ ଅଫିସର ରହିପାରିବେ । କୈଳାସବାବୁ ସାମାନ୍ୟ କିରାଣୀ । ଅଳ୍ପ ଭଡ଼ାରେ କେବଳ ବହୁ ଲୋକଙ୍କ ପାଇଁ ଏକ ସର୍ବସାଧାରଣ ବ୍ୟତୀତ ଅନ୍ୟ କୌଣସି ବ୍ୟବସ୍ଥା ନାହିଁ ।

ସାଢ଼େ ଛଅଟାରୁ ଜଣେ ଜଣେ ପାଇଖାନା ଦୁଆରେ ଧାଡ଼ି ବାନ୍ଧିଯାଏ । କୈଳାସ ଚମ୍ପତି ଭାବନ୍ତି ସେ ଧକ୍କାମାରି ଆଗକୁ ମାଡ଼ିଯିବେ ଏବଂ ପାଇଖାନା ଭିତରେ ପଶିଯିବେ; ମାତ୍ର ଭଦ୍ରତା ଦୃଷ୍ଟିରୁ ତାହା ସେ କରିପାରନ୍ତି ନାହିଁ । ମନରେ ସଙ୍କୋଚ ଆସେ; ପାଇଖାନା ଦୁଆର ମୁହଁରେ ଛିଡ଼ା ହେବାପାଇଁ । ଚୁପ୍‌ଚାପ୍ ସେ ବସିଥାନ୍ତି ବିଛଣା ଉପରେ, ଆଖି ଲାଗିରହିଥାଏ ପାଇଖାନା ଦୁଆର ମୁହଁରେ, ଫାଙ୍କା ପଡ଼ିଗଲେ ହାତର ଗୁଡ଼ାଖୁ ଦାନ୍ତ ଆଡ଼କୁ ଚାଲିଯାଏ ଏବଂ ସେ ତତ୍ପରତାରେ ପଶିଯାନ୍ତି ପାଇଖାନା ଭିତରେ ।

ପାଇଖାନା କାର୍ଯ୍ୟସାରି ଏକମାତ୍ର ପାଣି ପାଇପ୍ ନିକଟରେ ପୁଣି କିଛି ସମୟ ପ୍ରତୀକ୍ଷା କରିବାକୁ ହୁଏ । କିଛି ସମୟ ଅପେକ୍ଷା ପରେ ହାତମୁହଁ ଭଲ ଭାବରେ ଧୋଇ ସେ ଫେରିଆସନ୍ତି ତାଙ୍କର କୋଠରୀକୁ ।

ଅତ୍ୟାଧୁନିକ ପେଷ୍ଟ ତାଙ୍କ ଭାଗ୍ୟରେ ଯୁଟେନା । ସେ ସଂଗ୍ରହ କରିଥାନ୍ତି ପାଉଁଶ ଓ ବାଉଁଶ ଦାନ୍ତଘଷା କାଠି ଛେଲା । ତାହାହିଁ ପରିବାରର ସମସ୍ତଙ୍କର କାର୍ଯ୍ୟରେ ଲାଗେ ।

ସକାଳ ବ୍ରେକ୍‌ଫାଷ୍ଟ ତାଙ୍କ ଭାଗ୍ୟରେ ନାହିଁ । ଚା' କପେ ପିଇଦେଲେ ଅବଶ୍ୟ ଚଳେ; ମାତ୍ର ମହଙ୍ଗା ଯୁଗରେ ଚିନି କିଣି ଚା ପିଇବା, ଦୁଧ କଲେ ଦୁଧଟଙ୍କା ଦେଇ ଆଣିବା ତାଙ୍କଦ୍ୱାରା ହୁଏନି । ଦୁଧ ସ୍ଥାନରେ ଲେମ୍ବୁ ଦେଇ କେତେଦିନ ଚା' ପିଉଥିଲେ । ଗୋଟେ ଲେମ୍ବୁ ଦାମ ପଚିଶି ପଇସା କିଲୋସ ଚମ୍ପତ ନାଲି ଚା'ରେ କାମ ଚଳାଇ ଦିଅନ୍ତି । ତୁଳସୀପତ୍ର ମେଞ୍ଚେ ଗୋଲମରିଚ ସାଙ୍ଗରେ ସିଝାଇ ଦେଇ ପାଣି ମିଳାଇ ପିଇଦେଲେ ସକାଳ ଜଳଖିଆ ହୋଇଯାଏ । ପରିବାରର ଲୋକମାନେ ମଧ୍ୟ ସେଥିରେ ଅଭ୍ୟସ୍ତ ହୋଇଗଲେଣି । ପାଉଁରୁଟି ବିସ୍କୁଟ କିଣି ପାରିବାର ତାଙ୍କର ବା ଶକ୍ତି କେଉଁଠୁ ଆସିବ । ପିଲାମାନେ ଦିନେ ଜେଦରିଯାଇ "ବାପା, ଆମକୁ ବିସ୍କୁଟ ଦିଅ" ବୋଲି ଲଗାଇଥିଲେ । ସେ ତୁଳସୀ ପତ୍ରର ମହିମା ସମ୍ପର୍କରେ ଏକ ଲମ୍ବା ଭାଷଣ ଦେଇ ତାହା କିପରି ରୋଗ ପ୍ରତିଷେଧକ ବୁଝାଇ ଦେଇଥିଲେ । କାଶ, ଜ୍ୱର, ପେଟ ବେମାରି ପାଇଁ ମହୌଷଧି ତୁଳସୀପତ୍ର । ପଇଁତିରିଶି ବର୍ଷରେ ସେ ଏବେ ବି ଶକ୍ତ ଏବଂ କୌଣସି ବେମାରି ଆକ୍ରମଣ କରିପାରୁନି । ଏହା କେବଳ ତୁଳସୀପତ୍ର ନେବାରୁ ହୋଇଛି । ପିଲାମାନେ ବୁଝିଗଲେ ।

× × × ×

ସେତେବେଳେ ପିଲାମାନେ ଉଠି ସାରିଥାନ୍ତି । ପତ୍ନୀ ଉଠା ଚୁଲିରେ କୋଇଲା ଆଞ୍ଚ ଧରାଇ ସାରଲେଣି । ଧୂଆଁ ଘରର ଚାରିଆଡ଼େ ମାଡ଼ି ଯାଇଥାଏ । ପ୍ରତ୍ୟେକ ଦୁଆର ମୁହଁରେ ଧୂଆଁ ବ୍ୟାପିଯାଇ ଏକୋଇଶି ବଖରା ଘରକୁ ଧୂଆଁ ଳିଆ କରି ପକାଇଥାଏ । ପ୍ରଥମେ ପ୍ରଥମେ ପିଲାମାନେ କାନ୍ଦୁଥିଲେ । ବର୍ତ୍ତମାନ ଅଭ୍ୟସ୍ତ ହୋଇଗଲେଣି ।

କାଠ ଆଲମାରୀରୁ ପୁରୁଣା ଗୁଡ଼ା ଫ୍ରେମର ଚଷମାକୁ ଆଖିରେ ମାଡ଼ିଦେଇ ସେ ବାହାରି ପଡ଼ନ୍ତି ପଦାକୁ । ଛାତ ଉପରକୁ ଯାଇଥିବା ସିଡ଼ିରେ ଚଢ଼ି ଘର ମାଲିକର ଦୁଆର ମୁହଁରେ ହାଜର ହୋଇଯାନ୍ତି । ମାଲିକର ପୁଅ ଦୁହେଁ ସେତେ-ବେଳକୁ ପ୍ରସ୍ତୁତ ହୋଇ ଅପେକ୍ଷା କରିଥାନ୍ତି ମାଷ୍ଟରଙ୍କର ଆସିବାକୁ । ସେ ଘରେ ରହିବାଦିନୁ ସେ ଏ ପିଲାମାନଙ୍କୁ ପଢ଼ାଉଛନ୍ତି ।

କୈଳାସ ବାବୁ ପିଲାଙ୍କୁ କେବେ ପଢ଼ାଇ ନଥିଲେ । ପାଠ ପଢ଼ିବାବେଳେ ବହୁ କଷ୍ଟରେ ଗାନ୍ଧୀ ଉଭଜନ୍‌ରେ ମାଟ୍ରିକ୍‌ଟା ପାଶ୍ କରିବା ମାତ୍ରେ ଯୁଟି ଯାଇଥିଲେ ଚାକିରିରେ, ନିଜେ ତ ସମୟ ପାଇନଥିଲେ ପଢ଼ିବାକୁ ପୁଣି ଟିଉସନ କେବେ କରିବେ । ଘର ମାଲିକ ଟିଉସନ୍ ପାଇଁ ମାଷ୍ଟର ଖୋଜୁଛନ୍ତି ଶୁଣି ପହଞ୍ଚି ଯାଇଥିଲେ ତାଙ୍କ ପାଖରେ ଏବଂ କିପରି ସେ ଟିଉସନ୍ କରି ନିଜକୁ ଗଢ଼ିଛନ୍ତି ସେ କଥା ବିଶଦ ଭାବରେ ବର୍ଣ୍ଣନା କରିବା ପରେ ଟିଉସନ୍‌ଟା ତାଙ୍କୁ ମିଳିଯାଇଥିଲା । ଘରଭଡ଼ା ବାବଦକୁ ଦିଆଯାଉଥିବା ଶହେ ଟଙ୍କା ତାଙ୍କୁ ଦେବାକୁ ହେଉ ନଥିଲା । ନିଜର ବୁଦ୍ଧି ଥିବାରୁ କୈଳାସ ଚନ୍ଦ୍ର ଶହେ ଟଙ୍କା ଦରମାରୁ ବଞ୍ଚାଇ ରଖି ପାରୁଥିଲେ ।

ଘଣ୍ଟାରେ ନଅଟା ବାଜିବାମାତ୍ରେ ସେ ଗ୍ରୁତ ଉପରୁ ଓହ୍ଲାଇ ପୁଣି ଆସି ଯାଉଥିଲେ ନିଜର ବଖରାକୁ । ପାଣି ଟାଇପ୍ ନିକଟରେ ସେତେବେଳକୁ ପୁଣି ଭିଡ଼ । ସମସ୍ତେ ତାଙ୍କ ପରି ଚାକିରିଆ । ଅଫିସ୍ ଯିବାପାଇଁ ସମସ୍ତେ ତରତର । ଟାଇପ ପାଖରେ ଛିଡ଼ା ନହୋଇ ସେ ବାଲ୍‌ଟିରେ ପାଣି ବାଲଟିଏ ଧରି ସିଡ଼ି ଉପରେ ଦୁଇଚାରି ତାଳ ପାଣି ନିଜ ଉପରକୁ ଅଜାଡ଼ି ଦେଉଥିଲେ । କେହି କେହି କୈଳାସ-ଚନ୍ଦ୍ରଙ୍କୁ ଏ ବିଷୟରେ ପଚାରିଲେ ସେ କହୁଥିଲେ, "ସ୍ତ୍ରୀମାନେ ସିନା ଘର ଭିତରେ ଗାଧୋଇବେ । ସେ ପରା ପୁରୁଷ ।" ରବିବାର ଦିନରେ କେବଳ ସେ ମନପୂରାଇ ତିନି ଚାରିଘଣ୍ଟା ଗାଧୋଇ ପଡ଼ୁଥିଲେ । ଲାଇଫ୍‌ବୟ ସାବୁନରେ ପରିବାରର ସବୁ ଲୁଗାକୁ ସଫା କରିବା ପରେ ସେହି ସାବୁନକୁ ନିଜ ଦେହ ସଫାରେ ମଧ୍ୟ ଲଗାନ୍ତି-ଥିଲେ । ଲୁଗାଧୁଆ ସାବୁନ୍‌ରେ ଭଲ ଦେହ ସଫା ହୁଏ ବୋଲି ସେ କହୁଥିବାର ସମସ୍ତେ ଜାଣନ୍ତି ।

ଗାଧୋଇ ସାରି ଓଦା ଲୁଗାରେ ଘର ଭିତରେ ପଶି କାନ୍ଥ ଆଲମିରାରେ ସଯତ୍ନରେ ଥୁଆ ହୋଇଥିବା ଲକ୍ଷ୍ମୀଙ୍କ ଫଟୋ ନିକଟରେ ମୁଣ୍ଡିଆଟାଏ ମାରି ଦିଅନ୍ତି ଧୂପର ଖଣ୍ଡିଏ କାଠିରେ ଅଗ୍ନି ସଂଯୋଗ କରି । ବେଶି ସମୟ ଲାଗେନା ଏ କାର୍ଯ୍ୟ ଶେଷ କରିବାକୁ । ନିର୍ଦ୍ଦିଷ୍ଟ ସ୍ଥାନରେ ବସିଯାଆନ୍ତି ଭୋଜନ ଉଦ୍ଦେଶ୍ୟରେ । ପତ୍ନୀ ସେତେବେଳକୁ ରୋଷେଇ କାମ ସାରି ଦେଇଥାନ୍ତି । ଗିଲାସରୁ ପାଣି ଚଳୁଏ ଧରି ଅନ୍ନ ଦେବତାଙ୍କ ଉଦ୍ଦେଶ୍ୟରେ ଆଚମନ କରି କ୍ଷେପଣ କରନ୍ତି ।

କୈଳାସଚନ୍ଦ୍ରଙ୍କର ଖାଇବାର ମଧ୍ୟ ଏକ ସ୍ୱତନ୍ତ୍ରତା ରହିଛି । ସେ ତରକାରି ଓ ଭାତରେ ହାତ ଚଳାଇ ଦିଅନ୍ତି । ପବପବାଣୀ ଦିନରେ ତାଙ୍କର ବ୍ୟବହାର ହୁଏ । ତରକାରି ଝୋଳକୁ ଭାତରେ ଗୋଳାଇ ସେ ଭୋଜନ ସମାପ୍ତ କରନ୍ତି । ଖାଇବା ସାଙ୍ଗରେ ଅବଶ୍ୟ ଆମ୍ବୁଲ ସାଙ୍ଗରେ ଲୁଣ ଲଙ୍କାର ଝୋଳଟେ ଥାଏ । ପରିବାରେ ତାଙ୍କର ବେଶି ଖର୍ଚ୍ଚ ହୁଏନା । ରୁଚି ଅନୁଯାୟୀ ପ୍ରଚୁର ମିଳୁଥିବା ପରିବାରେ ସେ

କାମ୍ ଚଳାଇ ଦିଅନ୍ତି । ମାଛ ଓ କୋବି ଇତ୍ୟାଦି କିଣିବା ତାଙ୍କ ପକ୍ଷରେ କଷ୍ଟକର । ରବିବାର ଦିନରେ ଅବଶ୍ୟ ଅଢ଼େଇଶହ ମାଛ ଘରକୁ ଆଣିଥାନ୍ତି ।

ଅଫିସରୁ ପ୍ରତ୍ୟେକ ଦିନ ଆଣିଥିବା ମୋଟା ମୋଟା ଫାଇଲକୁ କାଖରେ ଯାକି ସେ ବାହାରି ପଡ଼ନ୍ତି । ସ୍ଲିପର ଛପଲଟିକୁ ଗୋଡ଼ରେ ଗଳାଇ ଦିଅନ୍ତି । ଅଫିସରୁ ଫେରିବା ବାଟରେ ପରିବା ଆଣିବା ପାଇଁ ଟଙ୍କେ ଦି'ଟଙ୍କା ପତ୍ନୀଙ୍କଠାରୁ ଗଲାବେଳେ ମାଗି ନିଅନ୍ତି । ଅଫିସ୍‌ରେ କେହି କେହି ତାଙ୍କ ଚପଲକୁ ଦେଖି ପରିହାସ ଛଳରେ କହିଲେ ସେ କହନ୍ତି, "ହାଲୁକା ଚପଲରେ ଚାଲିବାକୁ ଭଲଲାଗେ । ଚମଡ଼ା ଜୋତା ବ୍ୟବହାର କଲେ ପାଦରେ ରୋଗ ହୁଏ । ହିନ୍ଦୁ ଶାସ୍ତ୍ରରେ ଚମଡ଼ା ବ୍ୟବହାର ପରି ନିଷେଧ କରାଯାଇଛି ।"

ତିନିକିଲୋମିଟର ଅଫିସ୍‌କୁ ପାୟତଃ ସେ ସାଇକେଲ୍‌ରେ ହିଁ ଯାଇଥାନ୍ତି । ବାହାହେବା ବେଳର ଶ୍ୱଶୁର ଘର ଯୌତୁକ ହରକୁଲେସ ସାଇକେଲ୍, ଛୁଟି ଦିନରେ ସେ ନିଜେ ହିଁ ମରାମତି କରନ୍ତି । ଟାୟାରରେ ଅସଂଖ୍ୟ ପୂତାଫୋଡ଼ା ଦେଖିବାକୁ ମିଳେ । ସାଇକେଲ ଖରାପ ହୋଇଥିଲେ ସେ ଚାଲିବାକୁ ପସନ୍ଦ କରନ୍ତି । ସେ କହନ୍ତି, "ଚାଲିବା ଦ୍ୱାରା ଶରୀର ଫୁର୍ତ୍ତି ହୁଏ ଏବଂ କାମ କରିବାକୁ ଆଗ୍ରହ ଆସେ ।"

ଅଫିସ୍ ପହଞ୍ଚିଯାଇ ସେ କାଢ଼ି ପକାନ୍ତି ଆଲମିରା ଭିତରୁ ଥାକ ଥାକ ଫାଇଲ । କାମ କରିବାକୁ ବେଶି ମନ ହୁଏନା । ବୟସ ଆସି ପହଁଚିଲାଣି ବ୍ୟାଳିଶି, ମାତ୍ର ଚାକିରି ଜୀବନରେ ଫାଇଲ୍ ଚାପରୁ ମୁକ୍ତ ନାହିଁ ? ପକେଟରୁ କଲମ କାଢ଼ି ସେ ଫାଇଲ୍‌ରେ ନୋଟ୍ ଲେଖିବାରେ ବ୍ୟସ୍ତ ରହିଯାନ୍ତି । ଅସଂଖ୍ୟ ଫାଇଲ୍ ଗଦା ଭିତରେ ଚଷମା ଲଗା ମୁହଁଟି କୈଳାଚନ୍ଦ୍ରଙ୍କର ବୁଡ଼ିଯାଏ । ଯାବତୀୟ ଚିନ୍ତା ଯେପରି କ୍ଷଣିକ ପାଇଁ ଓହ୍ଲାଇଯାଏ ତାଙ୍କ ମୁଣ୍ଡରୁ ।

ଦୁଇ ତିନି ଘଣ୍ଟାରୁ ଅଧିକ କାମ ଏକ ସମୟରେ କରିବା ତାଙ୍କ ପାଇଁ କଷ୍ଟକର ବ୍ୟାପାର । କାମ କରିବାକୁ ବେଶି ମନ ହୁଏନା । ଅବଶ୍ୟ ଆଜିକାଲିକା ଟୋକାମାନେ ଘଣ୍ଟେଠାରୁ ଅଧିକ ବସନ୍ତି ନାହିଁ । ସେମାନେ ଯାଆନ୍ତି କ୍ୟାଣ୍ଟିନ୍ ଆଡ଼େ ଚା' ପିଇବାକୁ । କୈଳାସଚନ୍ଦ୍ରଙ୍କ ମତରେ ଚା' ପାନ ଶରୀର ଉପରେ ଖରାପ ପ୍ରଭାବ ପକାଏ ।

ଦ୍ୱିପହର ବେଳେ ସମସ୍ତେ ଯେତେବେଳେ ଜଳଖିଆ ଖାଇବାକୁ ଯାଆନ୍ତି । କୈଳାସଚନ୍ଦ୍ର ଡବାରୁ ବାହାର କରନ୍ତି ମୁଢ଼ି । ଅଫିସ୍ ଗଲାବେଳେ ପତ୍ନୀ ପ୍ରାୟ ଡବାରେ ମୁଢ଼ି ଦେବାକୁ ଭୁଲି ନଥାନ୍ତି । ପିଆଜ ଖଣ୍ଡେ ସାଙ୍ଗରେ ମୁଢ଼ି ଖାଇବାକୁ ତାଙ୍କୁ ଖୁବ ଭଲଲାଗେ । କେହି କେହି ବନ୍ଧୁମାନେ ପଚାରିଲେ ସେ କହନ୍ତି, "ମୋତେ ମୁଢ଼ି ଖାଇବାକୁ ଭଲ ଲାଗେ । ଡାକ୍ତରମାନେ ଘିଅ ତେଲରେ ତିଆରି ଖାଦ୍ୟ ଖାଇବାକୁ ତ ମନାକରିଛନ୍ତି । ତା'ଛଡ଼ା ଆଜିକାଲି ଯେତେକ ପେଟ ବେମାରି,

ଗ୍ୟାଷ୍ଟ୍ରିକ, ଏପେଣ୍ଡିସାଇଟିକ୍ସ, ଅଲସର୍ ରୋଗ ସମ୍ପର୍କରେ ଏକ ଲମ୍ବା ଭାଷଣ ସେ ବନ୍ଧୁମାନଙ୍କୁ ଦିଅନ୍ତି । ଖାଇବାବେଳେ ଦେଶର ରାଜନୀତିଠାରୁ ସାଂପ୍ରତିକ ସାମାଜିକ ବ୍ୟବସ୍ଥା ଏବଂ ରୋଗ ଇତ୍ୟାଦି ସବୁକିଛୁ ବିଷୟରେ ଆଲୋଚନା ପ୍ରାୟତଃ ହୋଇଥାଏ । ରାଜନୀତି ବିଷୟରେ ପ୍ରାୟ ବେଶି ଚର୍ଚ୍ଚା ହୁଏ । ଆସନ୍ତା ନିର୍ବାଚନରେ କିଏ ଇଲେକ୍ସନ୍ ଜିତିବ ଏହାନେଇ କେତେ କଳ୍ପନା ଜଳ୍ପନା ସହିତ ନିଜ ନିଜ ପାର୍ଟିର ସମର୍ଥକମାନଙ୍କ ଭିତରେ ସେଠାରେ ବାକ୍‌ବିତଣ୍ଡା ଆରମ୍ଭ ହୋଇଯାଏ । ଦୁଇଟା ପରେ ସାଧାରଣତଃ ଅଫିସ୍‌ରେ ବେଶି ସମୟ କେହି କାମ କରିବାର ଦେଖାଯାଏ ନାହିଁ । କୈଳାସଚନ୍ଦ୍ର କିନ୍ତୁ ଅଭ୍ୟାସ ଅନୁସାରେ ପାଞ୍ଚଟା ପର୍ଯ୍ୟନ୍ତ ଅଫିସ୍‌ରେ ରହିବାରେ ଦେଖାଯାଏ । ସାଢ଼େ ପାଞ୍ଚଟାବେଳକୁ ଫାଇଲଗୁଡ଼ିକୁ ଆଲମିରାରେ ଭରିବ ପକାଇ ହାତରେ ପ୍ଲାଷ୍ଟିକର ବ୍ୟାଗ୍‌ଟା ଧରି ବାହାରି ପଡ଼ନ୍ତି ସେ ।

× × × ×

ସାଇକେଲ୍‌ରେ ପକାଇଥିବା ବଡ଼ ତାଲାଟିକୁ ଖୋଲି ପେଡ଼ାଲ୍ ଉପରେ ଗୋଡ଼ ଦେଇ ଧୀରେ ଧୀରେ ଚଳାଇବାକୁ ଲାଗିଯାନ୍ତି । ସେ ପ୍ରାୟ ମାର୍କେଟ ବାଟ ଦେଇ ଆସନ୍ତି । ମାର୍କେଟଠାରେ ମାରୱାଡ଼ି ରାମ ଅଗ୍ରୱାଲର ଦୋକାନ । ମାସକର ଯାବତୀୟ ଚାଉଳ, ତେଲ ତାଙ୍କଠାରୁ ବାକିରେ ଆସେ । ଯେଉଁଦିନଠାରୁ ଭୁବନେଶ୍ୱର ଆସିଲେଣି, ସେଦିନୁ ସେ ରାମ ମାରୱାଡ଼ିଙ୍କଠାରୁ ହିଁ ଜିନିଷ କିଣନ୍ତି । ତାଙ୍କ ସହିତ ବଢ଼ି ଉଠିଲାଣି ଏକ ଅହେତୁକ ସମ୍ପର୍କ । ତାଙ୍କ ଦୋକାନରେ ଜିନିଷର ମୂଲ୍ୟ ଅଧିକ ବୋଲି କେତେଥର ସେ ଆପତ୍ତି କଲେଣି । ମାରୱାଡ଼ି ତାଙ୍କୁ ପରିଷ୍କାର ଦିନେ କହିଦେଲେ, "ବୁଝିଲେ କୈଳାସବାବୁ । ବାକି ନେବା ଜିନିଷ ନଗଦ ବିକ୍ରୀ ଦାମ୍‌ରେ ମିଳିବ ନାହିଁ । ଆଜିକାଲି ବ୍ୟାଙ୍କରେ କେତେ ସୁଧ ଲାଗୁଛି ଜାଣିଛନ୍ତି ତ ।" କୈଳାସଚନ୍ଦ୍ର ବାକି ନଦେଲେ ମାସକ ଚଳିବେ କେମିତି । ସେଇଦିନଠାରୁ ଆଉ କେବେ ସେ ବିଷୟରେ ଯେ ପ୍ରଶ୍ନ କରି ନାହାନ୍ତି । କିନ୍ତୁ ଅଭ୍ୟାସବଶତଃ ସବୁଦିନ ପ୍ରାୟ ତାଙ୍କ ଦୋକାନ ଦେଇ ଯାଆନ୍ତି ଯଦିଓ ସପ୍ତାହରେ ଥରେ ବା ଦୁଇଥର ତେଜରାତି ଦ୍ରବ୍ୟ କିଣିଥାନ୍ତି । ମାର୍କେଟରୁ ବୁଲି ବୁଲି କିଛି ପରିବାପତ୍ର ଧରି ଫେରନ୍ତି ସେ ।

ଘରେ ପହଞ୍ଚିବାମାତ୍ରେ ପତ୍ନୀଙ୍କର ଫଣ ଫଣ ମୁହଁ । ଅନ୍ୟ ପଡ଼ୋଶୀମାନଙ୍କ ସହିତ ବଡ଼ ପାଟିରେ ଚିତ୍କାର କରିବାର ଦୂରରୁ ସେ ଶୁଣିପାରନ୍ତି । ତାଙ୍କ ବଡ଼ପୁଅ କାହାର ପିଲା ସହିତ କଳି କରିଥିବ । କୈଳାସଚନ୍ଦ୍ରଙ୍କର ମନ ଉଦାସ ହୋଇଯାଏ । ସେ ନିରାଶ ମନ ଓ ହୃଦୟରେ ଘର ଭିତରେ ପଶି ଚୁପ୍‌ଚାପ୍ ବସିପଡ଼ନ୍ତି । ସେ ବୁଝିଲେ ମଧ୍ୟ ପ୍ରତ୍ୟେକ ଦିନ ଆଣିଥିବା ଫାଇଲକୁ ଖୋଲି କୌଣସି କାର୍ଯ୍ୟ କରିପାରନ୍ତି ନାହିଁ ।

ସେ ସବୁ ଅତୀତ ଦିନର କଥା । ନିଜ ପରିବାର ସହିତ ଗୋଟିଏ ଗ୍ରେଟ୍ ଫ୍ଲାଟରେ ସ୍ୱତନ୍ତ୍ର ଭାବରେ ରହିବାର ସ୍ୱପ୍ନ ବର୍ତ୍ତମାନ ହୋଇଗଲାଣି ବହୁତ ପୁରୁଣା । ଏତେଦିନ ରାଜଧାନୀରେ ରହିଲେ ମଧ୍ୟ ତାଙ୍କ ଭାଗ୍ୟକୁ ଖଣ୍ଡିଏ ଘର ସରକାରଙ୍କ ତରଫରୁ ବା ଭଡ଼ାରେ ମିଳି ପାରିନାହିଁ । ତାଙ୍କର ସ୍ୱପ୍ନ ରହିଗଲା କେବଳ ସ୍ୱପ୍ନ ହୋଇ । ସେ ଯାହା ହେବାର ଥିଲେ, ହୋଇଗଲେ । ବୟସର ସାୟାହ୍ନରେ ଉପସ୍ଥିତ । ଯାହା ରୋଜଗାର କରିବା କଥା କରିନେଲେ । ଜୀବନର ଯେତେ ଆଶା, ଆକାଙ୍‌କ୍ଷା ଓ ଇଚ୍ଛା ଆଉ ପୂରା ହେବାର ନୁହେଁ ।

ସନ୍ଧ୍ୟାବେଳକୁ ପିଲାମାନେ ଗୋଟିଏ ଗୋଟିଏ ହୋଇ ଫେରି ଆସନ୍ତି ସେହି ଖୋଳକୁ । ପତ୍ନୀ ଖାଇବାକୁ ପରଷି ଯାଆନ୍ତି ଚୁପ୍‌ଚାପ୍ । ପଡ଼ୋଶୀରେ ରହୁଥିବା ଅନ୍ୟମାନଙ୍କ ଘରୁ ଭୁଟ୍‌ଭାଟ୍ ଶୁଭୁଥାଏ । ଛୋଟିଆ କୋଠରୀରେ ବିଛଣା ପକାଇଦେଇ ଶୋଇ ପଡନ୍ତି ଛୁଆମାନଙ୍କ ପତ୍ନୀ । ବଡ଼ପୁଅ ଫେରି ନଥାଏ ସେ ପର୍ଯ୍ୟନ୍ତ । ରାତି ଦଶଟା ବାଜେ । କବାଟରେ କାହାର ମୃଦୁ ଆଘାତ । କୈଳାସଚନ୍ଦ୍ର ଜାଣନ୍ତି ବଡ଼ପୁଅ ଫେରିଲା । ଭାବନ୍ତି, ଗାଳି ଦେବେ । କହିବେ "ବାପ ରୋଜଗାର କଷ୍ଟ ପ୍ରତ୍ୟେକ ଦିନ ମରୁଛୁ, ପୁଅ ବୁଲି ଏଠି ସେଠି ଝଗଡ଼ା କରୁଛୁ ।" ପୁଣି ମନକୁ ମନ ରହିଯାଆନ୍ତି । ତାର ବା କ'ଣ ଦୋଷ । ସେ ତାକୁ କଣ ଦେଇଛନ୍ତି ଯେ, ପାଠ ପଢ଼ିବା ଅଷ୍ଟମ ଶ୍ରେଣୀଠାରୁ ବନ୍ଦକରି ଦେଇଛନ୍ତି । ଘର ବୋଲି ବକଟେ ସେଥିରେ ସାତପ୍ରାଣୀ ଚଳିବେ । ପ୍ରଥମେ ସେମାନେ ଦୁଇଜଣ ଥିଲେ । କେତେ ସ୍ୱପ୍ନ ଦେଖୁଥିଲେ । ତା'ପରେ ବର୍ଷକୁ ବର୍ଷ ଗୋଟେ ହୋଇ ସେମାନେ ବର୍ତ୍ତମାନ ସାତପ୍ରାଣୀ ।

ପୁରୁଣା ରେଜେଇ ଭିତରେ ମୁହଁ ଲୁଚାଇ ଚୁପ୍‌ଚାପ୍ ଶୋଇଲେ କୈଳାସ ଚନ୍ଦ୍ର । କିଛି ସମୟ ପରେ ପତ୍ନୀ ଆସି ତାଙ୍କରି ପାଖରେ ଗଡ଼ିପଡ଼ିଲେ । କୈଳାସ ଶୋଇ ପାରୁନଥିଲେ । ପତ୍ନୀଙ୍କର ଶରୀରର ଗନ୍ଧରେ ସେ ଆମୋଦିତ ହୋଇ ଉଠୁନ ଥିଲେ । ନାନାପ୍ରକାର କଥା ତାଙ୍କ ମନରେ ପୁଣି ଉଠି ମିଳାଇ ଯାଉଥିଲା । ସେ ଭାବୁଥିଲେ କେତେ କଷ୍ଟ ସେ କରୁନାହାନ୍ତି । ମିତବ୍ୟୟିତା ସହକାରେ ଚଳି ମଧ୍ୟ ପରିବାରରେ ସେ ଦେଇ ପାରୁନାହାନ୍ତି ସନ୍ତୋଷ ।

ଯଦି ତାଙ୍କର ଚାକିରି ଚାଲିଯାଏ, ସେ ଯଦି କୌଣସି ଦୁର୍ଘଟଣାରେ ଶିକାର ହୁଅନ୍ତି; ତେବେ ତାଙ୍କ ପରିବାରର ଅବସ୍ଥା କ'ଣ ହେବ ? ତାଙ୍କ ଆଖି ଆଗରେ ଷ୍ଟେସନ ନିକଟରେ ସପରିବାର ଭିକ ମାଗୁଥିବା ଭିକମଗା ଲୋକମାନଙ୍କର ଚେହେରା ଭାସିଉଠେ । ଦୀନତାର ଆର୍ତ୍ତନାଦରେ ତାଙ୍କର ମନ ହାହାକାର କରେ । ପୁଣି ମନରେ ସାନ୍ତ୍ୱନା ଭରିଯାଏ । ସେମାନେ ଏତେ ଅଭାଗା ନୁହଁନ୍ତି । ପଡ଼ୋଶୀ ବଟକୃଷ୍ଣଙ୍କ କଥା ମନେପଡ଼େ । ଅଫିସ୍‌ରେ ଅନ୍ୟାନ୍ୟ ବନ୍ଧୁମାନଙ୍କ କଥା ଝିଅଲକୁ ଆସେ । ତା'ପରେ·· ସେ ଜାଣନ୍ତି ନାହିଁ ଦୁନିଆଁରେ କ'ଣ ଘଟେ । ନାକ ଘଡ଼ଘଡ଼ି କରି ତାଙ୍କ ଶୋଇବା କଥା ସୂଚିତ କରେ, କୈଳାସଚନ୍ଦ୍ର ଚମ୍ପତିଙ୍କ କର୍ମବହୁଳ ଜୀବନର ନିତିଦିନର ଘଟଣାର ପୂର୍ଣ୍ଣଚ୍ଛେଦ ପକାଇ ।

# ନିଷ୍ପ୍ରଭ ଏକଲବ୍ୟ

ସଦଳବଳେ ଗୁରୁ ଦ୍ରୋଣାଚାର୍ଯ୍ୟ ଶିଷ୍ୟ ପରିବେଷ୍ଟିତ ହୋଇ ନିକଟସ୍ଥ ଜଙ୍ଗଲ ଦିଗକୁ ଅଗ୍ରସର ହେଉଥିଲେ । ଯୁଧିଷ୍ଠିରଙ୍କର ପ୍ରିୟ କୁକୁରଟି ଧାଉଁଥିଲା ସେମାନଙ୍କ ପଛେ ପଛେ । ବହୁଦିନ ଧରି ଶିଖିଥିବା ଅସ୍ତ୍ରଶସ୍ତ୍ର ବିଦ୍ୟାର ପରୀକ୍ଷା ଦେବାପାଇଁ ଆଗଭର ହୋଇପଡ଼ିଲେ ସମସ୍ତେ । ଦ୍ରୋଣଙ୍କ ମନ ଆନନ୍ଦରେ ନାଚି ଉଠୁଥିଲା । ଏତେଦିନ ପରେ ସେ ପ୍ରମାଣ କରିଦେବେ ଅର୍ଜ୍ଜୁନ ତାଙ୍କର ପ୍ରିୟ ଶିଷ୍ୟ ଓ ଶ୍ରେଷ୍ଠ ଯୋଦ୍ଧା ।

ମଲ୍ଲ, କୁସ୍ତି, ଧନୁର୍ବିଦ୍ୟା ଇତ୍ୟାଦିର ପରାକାଷ୍ଠା ଦେଖାଇବାରେ ବ୍ୟସ୍ତ ଥିଲେ ସଭିଏଁ । ବହୁ ସମୟ ଦେଖି ଦେଖି ବିରକ୍ତ ଲାଗିଯାଇଥିଲା କୁକୁରଟିକୁ । ବଣର ଏଣେତେଣେ ବୁଲି ବୁଲି ଅନତିଦୂରରେ ଥିବା ଏକ ପର୍ଣ୍ଣକୁଟୀର ନିକଟରେ ପହଞ୍ଚି ଯାଇଥିଲେ । କଳାମଚମଚ ଦେହରେ ବଣର ଗଛ ଗୁଳ୍ମ ପିନ୍ଧି ଶବର ପିଲା ଏକଲବ୍ୟ ଧନୁରେ ଗୁଣ ଚଢ଼ାଉଥିଲା । ଭୋ ଭୋ କରି ଭୁକି ଉଠିଲା କୁକୁରଟି । ଯେତେ ବାରଣ କଲେ ମଧ୍ୟ ସେ କଥାକୁ କର୍ଣ୍ଣପାତ ନ କରି ଭୁକି ଚାଲିଥିଲା । ବିରକ୍ତ ହୋଇ ଉଠିଲା ଏକଲବ୍ୟ । ଦିନସାରା ସାଧନା ପଣ୍ଡ ହୋଇଯିବ ଯେପରି । ଅତ୍ୟନ୍ତ ବିରକ୍ତ ସହକାରେ ଧନୁରେ ତୀର ଯୋଖି କୁକୁରର ମୁହଁକୁ ଶରଦ୍ୱାରା ବନ୍ଦ କରିଦେଲା । ଶବ୍ଦ କରିବାର ଶକ୍ତି ନ ଥିଲା କୁକୁରଟିର । ଅତ୍ୟନ୍ତ ମ୍ରିୟମାଣ ହୋଇ ଦୌଡ଼ି ଆସିଥିଲା ବଣର ସେହି ଇଲାକାକୁ ଯେଉଁଠାରେ ଯୁଧିଷ୍ଠିର ଓ ଅନ୍ୟାନ୍ୟ ରାଜପୁତ୍ରମାନେ ବିଦ୍ୟାଭ୍ୟାସ କରୁଥିଲେ ।

କୁକୁରଟିର ଏତାଦୃଶ ଅବସ୍ଥା ଦ୍ରୋଣାଚାର୍ଯ୍ୟଙ୍କର ଦୃଷ୍ଟିକୁ ଏଡ଼ାଇ ପାରିଲା ନାହିଁ । ସେ ଅତ୍ୟନ୍ତ ନିରୀକ୍ଷଣ କରି ଦେଖୁଥିଲେ ଧନୁର୍ବିଦ୍ୟାରେ ସିଦ୍ଧହସ୍ତ ହୋଇଥିବା ସେହି ବୀରପୁଅର କାର୍ଯ୍ୟକୁ; ଯେ କୁକୁରଟିର ମୁହଁକୁ ଶରାଚ୍ଛାଦିତ କରିଛି ।

"ଧନ୍ୟ ସେହି ଯୋଦ୍ଧା, ପୃଥିବୀରେ ଅଦ୍ୱିତୀୟ ବୀର ନିଶ୍ଚୟ ।" ମନେ ମନେ ସ୍ୱଗତୋକ୍ତି କରି ଉଠିଲେ ଦ୍ରୋଣ ।

"ନା, ତା କେବେ ହେବାକୁ ସେ ଦେବେନି । ଅର୍ଜ୍ଜୁନକୁ ସେ ଶ୍ରେଷ୍ଠବୀର ଭାବରେ ଦେଖିବାକୁ ଚାହାଁନ୍ତି । ସଂସାରସାରା ଲୋକମାନେ କ'ଣ କହିବେ, ଦ୍ରୋଣଙ୍କ

ପଣ ଗୁରୁ ଥାଉଁ ଥାଉଁ ଅନ୍ୟ କେହି ବେଶି ଯୋଦ୍ଧା ଦେଖାଦେବେ, ତା' କେବେ ହୋଇପାରେନା । ମେ ହେବାକୁ ଦେବେ ନାହିଁ ।"

ସେହି ଖାରସ୍ପର୍ଦ୍ଧକୁ ଦେଖିବା ନିମିତ୍ତ ଆଗକୁ ମାଡ଼ିଚାଲିଲେ ଗୁରୁ ଦ୍ରୋଣ । ସାଂଗରେ ଶିଷ୍ୟମାନେ । ଅନତିଦୂର ପର୍ଣ୍ଣକୁଟୀରରେ ବସି ଏକଲବ୍ୟ ଶର ସନ୍ଧାନ କରୁଥିଲେ ।

ନିକଟତର ହେଲେ ଗୁରୁ ଦ୍ରୋଣ । ନିଜର ପରିଚୟ ପ୍ରଦାନ କଲେ । କାହାଠାରୁ ଯୁଦ୍ଧବିଦ୍ୟା ଶିକ୍ଷା କରୁଛ ବୋଲି ପଚାରିଲେ ।

ନିଷ୍ପାପ ଶିଶୁଟି ପରି ଏକଲବ୍ୟ ବାଟ କଢାଇନେଲେ ଗୃହ ମଧ୍ୟରେ ଅତି ଯତ୍ନରେ ପୂଜା ପାଉଥିବା ତାର ଗୁରୁଙ୍କର ମୂର୍ତ୍ତି ନିକଟକୁ । ସେ ମୂର୍ତ୍ତି ଦ୍ରୋଣଙ୍କ ବ୍ୟତୀତ ଆଉ କାହାର ନ ଥିଲା ।

ଦ୍ରୋଣଙ୍କ ମନରେ ଶବର ଯୁବକଟି ପ୍ରତି ସ୍ନେହ ଓ ଦୟା ଆସିଲେ ମଧ୍ୟ ଅର୍ଜୁନଙ୍କର ଶ୍ରେଷ୍ଠତ୍ୱ ପାଇଁ ତାଙ୍କର ପ୍ରାଣ କାନ୍ଦି ଉଠିଲା । କ୍ଷାତ୍ରବଂଶଜ ନ ହୋଇ ଏ ଜଗତ ଶ୍ରେଷ୍ଠ ଯୋଦ୍ଧା ହେବ ଏକଥା ସହିପାରିବେ କିପରି ସେ ।

"ଏକଲବ୍ୟ ! ମୁଁ ତୋର ଗୁରୁ ଦ୍ରୋଣାଚାର୍ଯ୍ୟ । ତୋର ଅସାମାନ୍ୟ ସଫଳତାରେ ମୁଁ ଅତ୍ୟନ୍ତ ପ୍ରୀତ । ଶିଷ୍ୟ ଭାବରେ ଯଦି ଗୁରୁଙ୍କ ପାଖରେ ଦକ୍ଷିଣା ନ ଦେଉ, ତେବେ ତୋର ଏ ବିଦ୍ୟା ମୂଲ୍ୟହୀନ ହୋଇପଡ଼ିବ ।"

"ଗୁରୁଦେବ ! ଯାହାଙ୍କର ଆଶୀର୍ବାଦରୁ ମୁଁ ଧନୁର୍ବିଦ୍ୟାରେ ଏତେ ପାରଙ୍ଗମ, ତାଙ୍କର ସାମାନ୍ୟ ଇଙ୍ଗିତରେ ଏ ମସ୍ତକ ମଧ୍ୟ ତାଙ୍କ ପାଦତଳେ ଅର୍ପଣ କରିବ ଏ ମୂର୍ଖ କିରାତ ।"

ନତଜାନୁ ହୋଇ ଦକ୍ଷିଣା ଦେବାକୁ ଆଗଭର ହୋଇ ଉଠିଲେ ଏକଲବ୍ୟ କେବଳ ଆଦେଶ ଅପେକ୍ଷାରେ ।

"ଚିରକାଳକୁ ତୋର ନାଆଁ ଦାଉ ଦାଉ ହୋଇ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ତୁ ହେବୁ ଶିଷ୍ୟମାନଙ୍କ ମଧ୍ୟରେ ମହତ୍ତ୍ୱମଣି । ବାମହାତର ବୃଦ୍ଧା ଆଙ୍ଗୁଠିଟିକୁ ଗୁରୁ ଦକ୍ଷିଣା ଭାବରେ ଦେବାକୁ ମୋର ଆଦେଶ ।" ଦ୍ରୋଣଙ୍କ ମୁଖରୁ ଏ ବାକ୍ୟରେ କ୍ଷଣକାଳ ସ୍ତମ୍ଭୀଭୂତ ହୋଇ ଉଠିଲେ ଏକଲବ୍ୟ ।

"ପ୍ରଭୋ ! ଏ କ'ଣ କଲ ତୁମେ, ଏକଲବ୍ୟକୁ କହିଥିଲେ ସେ ଚିରଜୀବନ ଆପଣଙ୍କର ଦାସ ଭାବରେ ଖଟିଥାନ୍ତା । କେବଳ ବୁଢ଼ା ଆଙ୍ଗୁଠିଟିକୁ ମାଗି ତାର ଶୌର୍ଯ୍ୟର ପରାକାଷ୍ଠାକୁ ଚିରଦିନ ବନ୍ଦ କରିଦେଲ । ଠିକ୍ ଅଛି । ଆପଣ ମୋର ଗୁରୁ । ଆପଣଙ୍କ ଆଦେଶ ମୋର କିଛି ନାହିଁ ।"

ତାରର ଶୋଣିତ ଧାରରେ ପିଚ୍ ପିଚ୍ କରି ରକ୍ତଗୁଡ଼ା ଛୁଟିକି ପଡ଼ିଲା । ବୁଢ଼ା ଅଙ୍ଗୁଠିଟି ହାତ ପାପୁଲିରୁ ଅଲଗା ହୋଇଯାଇଥିଲା ।"

"ବୁଝିଲ ଜିତେନ୍ ! ଏ ତ ପ୍ରାଚୀନ କାଳର କିମ୍ବଦନ୍ତୀ । କେତେ ସତ, କେତେ ମିଛ ଦେଖିବାକୁ କିଏ ଯିବ । ତଥାପି ଚିରନ୍ତନ ସତ୍ୟ କହିବା କଥାବସ୍ତୁ ଆମର ଅମୂଲ୍ୟ ସମ୍ପଦ ଏବଂ ତାହା ମୂଲ୍ୟବୋଧକୁ ଜାଗ୍ରତ କରିବାରେ ସହାୟକ । ଏବେ ବି ଏମିତି ଅନେକ ଅଛନ୍ତି ଯେଉଁମାନଙ୍କ ପାଖରେ ଏକଲବ୍ୟ ଦେଖାଯିବେ ନିଶ୍ଚିତ ।"

"ଆଚ୍ଛା ! ତେବେ ଏକାଳର ଏକଲବ୍ୟ କଥା ନ କହି ସେକାଳର କଥା କହି ମୋର ବହୁମୂଲ୍ୟ ସମୟକୁ ନଷ୍ଟ କରୁଛ କାହିଁକି ?" ସୌମେନ୍ଦ୍ର କଥାର ଉତ୍ତରରେ କହିଲା ଜିତେନ୍ଦ୍ର ।

ଆମେ ସମସ୍ତେ ଜଣେ ଜଣେ ଏକଲବ୍ୟର ବଂଶଧର । ଆମର ବଂଶଜମାନେ ହୁଏତ କିରାତ ନ ହୋଇପାରନ୍ତି କିମ୍ବା ହୋଇପାରନ୍ତି, ସେଥିରେ ବିଶେଷ କିଛି ପ୍ରଭେଦ ନାହିଁ । ଆମେ ଆମ ଗୁଣରେ, ଚରିତ୍ରରେ ଏକଲବ୍ୟଠାରୁ ମଧ୍ୟ ବିରାଟ ଶିଷ୍ୟତ୍ୱ ଦାବୀ କରି-ପାରନ୍ତି ।

ତୁମକୁ ଏ ଯୁଗର ଏକଲବ୍ୟ କଥା କହିବାବେଳେ ମୋ ମନରେ କେତେ କଥା ଜମାଟ ବାନ୍ଧିଯାଉଛି । 'ଆହାହା ! ତାଙ୍କପରି ଶିଷ୍ୟ କୋଟିକରେ ଗୋଟିଏ । ଭାଗବତର ପଦଟିଏ ଅଛି,

"ସର୍ପରେ କଲୁ ଜାତ ମୋତେ
ସ୍ୱଭାବ ଛାଡ଼ିବି କେମନ୍ତେ ।"

ଶିଷ୍ୟ ଭାବରେ ସେ କେମିତି ତାଙ୍କ ସ୍ୱଭାବ ଛାଡ଼ିଥାନ୍ତେ । ତୁମେ ଚିହ୍ନିଲ ବିଖ୍ୟାତ ଅଧ୍ୟାପକ ପଦ୍ମଲୋଚନଙ୍କୁ । ମୁଁ ତାଙ୍କରି କଥା ତୁମକୁ କହୁଛି । ସେ ଥିଲେ ପଣ୍ଡିତ କାଶ୍ୟପ ମିଶ୍ରଙ୍କ ପଟ୍ଟଶିଷ୍ୟ । ସେମାନଙ୍କ ମଧ୍ୟରେ କ୍ଷୀର ନୀର ସମ୍ପର୍କ । କଥା କଥାକେ ପଦ୍ମଲୋଚନ ତାଙ୍କର ଗୁଣମାନ ବାହୁନି ପ୍ରଶଂସା କରିବାରେ ଲାଗିଥିଲେ । କେତେଦିନ

ଏହିପରି ଯାଉଛି କହିହେବ ନାହିଁ । ଯେତେବେଳେ ଦେଖିବ ପୁରୁଣା ସ୍କୁଟରଟା ସରସ୍ୱତୀ ବିହାରଠାରେ ଥିବା ପଣ୍ଡିତ କାଶ୍ୟପଙ୍କ ଦୁଆର ପାଖରେ । କେହି ଦେଖାହେଲେ, ସାଥି ମେଳରେ ବା ଅଧ୍ୟାପକମାନଙ୍କ ନିକଟରେ କିମ୍ବା ସଭା ସମିତିରେ କହିବୁଲନ୍ତି ପଣ୍ଡିତ କାଶ୍ୟପଙ୍କ କଥା । ପଦ୍ମଲୋଚନ ତାଙ୍କ ଜୀବନରେ ଏପରି ଶିକ୍ଷକ ଦେଖି-ନାହାନ୍ତି ବୋଲି କହନ୍ତି ।

ଡିସେମ୍ବର ତା ୨୫ ତାରିଖ ଦିନ ଏକ ସାହିତ୍ୟ ସଭାରେ ଭାଷଣ ଦେବା ପ୍ରସଙ୍ଗରେ ପଦ୍ମଲୋଚନ କହିଲେ, ବନ୍ଧୁଗଣ ! ଓଡ଼ିଆ ସାହିତ୍ୟର ଯଶସ୍ୱୀ କଥାକାରମାନଙ୍କ ମଧ୍ୟରେ ଅଗ୍ରଣୀ ପଣ୍ଡିତ କାଶ୍ୟପ ମିଶ୍ର । ମାତ୍ର ଏଯାଏ ଏ ଜାତି ତାଙ୍କ ପ୍ରତିଭାକୁ ଚିହ୍ନିପାରିନି ନାହିଁ । ସରକାରଙ୍କର କନ୍ଦ୍ରୀୟ ସାହିତ୍ୟ ସଂଗଠନରେ ସଭ୍ୟ ପଦଟାଏ ମଧ୍ୟ ଏ ଯାଏ ମିଳିନି ନାହିଁ । ସେଭଳି ପ୍ରତିଭା ପ୍ରତି ଏପରି ଅପମାନ ଘୋର ଦୁଃଖ ଓ ପରିତାପର ବିଷୟ । ସେଦିନ ସେ ଭାଷଣ କେତେ ଶ୍ରୋତାଙ୍କୁ ଚମତ୍କୃତ କରିଥିଲା । କିନ୍ତୁ କେହି କେହି ମଧ୍ୟ କହୁଥିବାର ଦେଖାଯାଉଥିଲା, "ପଦ୍ମଲୋଚନକୁ ଯିଏ ଚିହ୍ନିଛି ସେ ଜାଣେ, କେତେବେଳେ ଏ ଘର ମାଉସୀ ତ କେତେବେଳେ ସେ ଘର ପିଉସୀ । ବିରାଡ଼ିପରି ଆଖିବୁଜି ଦୁଧ ପିଏ । ଟୋକାର କିଛି ମତଲବ୍ ନ ଥିଲେ କାଶ୍ୟପ ମିଶ୍ରଙ୍କର ଏତେ ବଡ଼ତି କାହିଁକି କରନ୍ତା ।"

"ତୁମେ ଜାଣିନ କି । କଲେଜରେ ପଢ଼ିଲାବେଳେ ପଦ୍ମଲୋଚନ ଥିଲା ଲେକ୍‌ଚରଙ୍କର ଓସ୍ତାଦ । ଯେତେକ ଟୋକାଙ୍କ ପଛରେ ଗୋଡ଼େଇ ଗୋଡ଼େଇ ଦିନଯାଉଥିଲା । ବୁଦ୍ଧି-ବଳରେ ମାର୍କ ମାରିଦେଲା ଅଧ୍ୟାପକ ଗୁଡ଼ିକ । ଛତାକୁ ଏମିତି ଧରିଛି ଯେ ଯେତେ-ବେଳେ ଯୁଆଡ଼େ ବର୍ଷାହେବ ପାଣିପଡ଼ିବ ଛତାରେ । ସମସ୍ତେ ତାର ସାଙ୍ଗସାଥି ଓ ବନ୍ଧୁବାନ୍ଧବ । କାଶ୍ୟପ ମିଶ୍ରଙ୍କ ପାଖରେ ବର୍ତ୍ତମାନ ହୁଏତ କିଛି କାର୍ଯ୍ୟ ଥାଇପାରେ ନଚେତ୍ … ।"

ଅଧା ରଖିଦେଲେ ବନ୍ଧୁଜଣକେ । ସଭାସ୍ଥଳରେ ଏପାଖ ସେପାଖ ପଞ୍ଜାବୀ ପିନ୍ଧି ଟହଲ ମାରୁଥିଲେ ପଦ୍ମଲୋଚନ । କେବଳ କାଶ୍ୟପ ମିଶ୍ର ଥିବାଯୋଗୁ ହିଁ ସେ ଏ ଅଛନ୍ତି ବୋଲି ସୌମେନ୍ଦ୍ରଙ୍କ ନିକଟରେ କହୁଥିଲେ ସେଠାରେ ।

"ସୌମେନ୍ଦ୍ର ! ସାର୍‌ଙ୍କ ପାଇଁ ମୋର ଏତେ ଖଟିଣି । ନଚେତ୍ ମୁଁ କିଏ । ଏମାନେ ସବୁ କୋଉ ଲେଖାରେ ସାହିତ୍ୟିକ । ଅନୁଷ୍ଠାନଟା ଆମର ଯେତେବେଳେ...... ଯଦି ଆମେ ନଦେଖିବା, ନବୁଝିବା ଲୋକମାନେ କ'ଣ କହିବେ···ପଣ୍ଡିତ କାଶ୍ୟପ ମିଶ୍ର ସଭାଧ୍ୟକ୍ଷ ଥାଇଁ ଥାଇଁ ଏମିତି ହେଉଛି ।"

"ଏଇମିତି କେତେ କଥା । କିଏ କହିବ । ଏସବୁ ଅନେକ ଦେଖିଛି । ମନେ ମନେ ଭାବେ ଗୁରୁଶିଷ୍ୟ ସମ୍ପର୍କ ଶୁଣିଥିଲି ମାତ୍ର ବର୍ତ୍ତମାନ ଆଖିରେ ଦେଖୁଛି ।"

ଥରେ କେହି ପଣ୍ଡିତ କାଶ୍ୟପଙ୍କୁ କହିଲା, "ପଣ୍ଡିତ ମହାଶୟ ! ସାପକୁ ଯେତେ ଦୁଧ ପିଆଇଲେ ବି ସାପ ତାର ବିଷକୁ ତ୍ୟାଗ କରିବ କେମିତି । ଏଇଠୁ ପଦ୍ମଲୋଚନଙ୍କୁ ତ୍ୟାଗ କରନ୍ତୁ । ସେ ଦୋମୁହାଁ ସାପ । ଆପଣଙ୍କର ସମସ୍ତ ପ୍ରଚେଷ୍ଟା କେବଳ ପାଣିରଗାର ପରି ମିଳାଇଯିବ ।"

ପଣ୍ଡିତ କାଶ୍ୟପ ଏହାକୁ ସ୍ୱୀକାର କରିବାକୁ ନାରାଜ । ସେ କହନ୍ତି, "ମୁଁ ଗୁରୁ । ଶିଷ୍ୟର ଭଲମନ୍ଦ ଦେଖିବା ମୋର କର୍ତ୍ତବ୍ୟ । କିଏ ଏକଲବ୍ୟ ହେଲା ନହେଲା ତାର ପରୀକ୍ଷା କରି ଦେଖିବା ମୋର ଶକ୍ତିର ବାହାର ।"

ଏସବୁ ଆଖି ଦେଖିବା କଥା । ପଦ୍ମଲୋଚନ ଓ ପଣ୍ଡିତ କାଶ୍ୟପଙ୍କର ସମ୍ପର୍କ ହୋଇ ଉଠିଲା ଆଲୋଚନାର ବସ୍ତୁ । ପରିସ୍ଥିତି ହେବ, ପଦ୍ମଲୋଚନ ପ୍ରଥମେ ନାଆଁ ଦେବେ କାଶ୍ୟପଙ୍କର । ଥରେ ଥରେ ପଦ୍ମଲୋଚନର ସାଙ୍ଗ ବିନୟରଞ୍ଜନ କହେ, "ସାର୍ ! ଆପଣ ଯାହା କୁହନ୍ତୁ—ପଦ୍ମଲୋଚନ ଆପଣଙ୍କ ନାଆଁର ନାଯାୟାସ ଫାଇଦା ଉଠାଉଛି । ଆପଣଙ୍କର ଅକ୍ଲାନ୍ତ ପ୍ରଚେଷ୍ଟା ତାକୁ ଉପଢ଼ୌକନ ଦେବାପାଇଁ । ସେ ଏଥିପାଇଁ ଉପଯୁକ୍ତ କି ନୁହେଁ ତାହା ବିଚାର କରୁନାହାନ୍ତି । ସମସ୍ତେ ଦେଖି ସେ ଆପଣଙ୍କୁ··· ।

କିଏ କେତେ କଥା ଏପରି କହନ୍ତି । ହସି ହସି ଉଡ଼ାଇ ଦିଅନ୍ତି ପଣ୍ଡିତ କାଶ୍ୟପ । ପଦ୍ମଲୋଚନ ଛୁଆଟାଏ, ତାଙ୍କର ହାତଗଢ଼ା ମଣିଷ ।

ପଦ୍ମଲୋଚନଙ୍କୁ ସମ୍ମାନସୂଚକ ଉପାଧି ମିଳିଲା । ପଣ୍ଡିତ କାଶ୍ୟପ ମିଶ୍ରଙ୍କର ଗୋଡ଼ ତଳେ ନଲଗେ । ମିଠା ପ୍ଲେଟଟିକୁ ସୌମେନ୍ଦ୍ରକୁ ବଢେଇ ଦେଇ କହିଲେ, "ସୌମେନ୍ଦ୍ର ! ପଦ୍ମଲୋଚନକୁ ଆଜି ସମ୍ମାନସୂଚକ ଉପାଧି ମିଳିଲା । ମୋ ମନ ଆଜି ବଡ଼ ଖୁସି । ମୋର ଶିଷ୍ୟ ମୋ ନାଆଁ ରଖିବ । ବେଦାନ୍ତର ତତ୍ତ୍ୱମାନଙ୍କୁ ସମଗ୍ର ଭାରତବର୍ଷରେ ପ୍ରଚାର କରିବ । ତାର ନୂତନ ଆବିଷ୍କାରରେ ସମସ୍ତେ ଚମତ୍କୃତ ହେବେ । ଏହାଠାରୁ ବଡ଼ଭାଗ୍ୟ ମୋ ନିକଟରେ ଅଧିକ କ'ଣ ଥାଇପାରେ ।"

ସମସ୍ତେ ଚମତ୍କୃତ ହୋଇଥିଲେ ନିଶ୍ଚୟ । ଯେଉଁଦିନ ପଦ୍ମଲୋଚନ ପଣ୍ଡିତ କାଶ୍ୟପ ମିଶ୍ରଙ୍କ ବିରୁଦ୍ଧରେ ପ୍ରକାଶ୍ୟରେ ଯୁଦ୍ଧ ଘୋଷଣା କଲା ଏବଂ ସରକାର କର୍ତ୍ତୃକ ସାହିତ୍ୟ ସଂଗଠନରେ ସଭ୍ୟ ହେବା ପାଇଁ ପଣ୍ଡିତ କାଶ୍ୟପଙ୍କ ବିରୁଦ୍ଧରେ ନିଜର

ପ୍ରାର୍ଥୀପତ୍ର ଦାଖଲ କଲା ଏବଂ କହିବୁଲିଲା କାଶ୍ୟପ ମିଶ୍ର ପରି ଧପ୍‌ପାବାଜ ଏ ସଂସାରରେ ଦେଖିବାକୁ ମିଳିବେ ନାହିଁ । ଅତ୍ୟଧିକ ଅହଂରେ ସଢ଼ୁଥିବା ଏହି ପଣ୍ଡିତଟା କୌଣସି ଆସନରେ ବସିବ । ପାଇଁ ଅନୁପଯୁକ୍ତ । ଏହିପରି ନାନାପ୍ରକାର କଟୂକ୍ତି, ବ୍ୟଙ୍ଗ ଓ ବିଦ୍ରୂପର କାଦୁଅମେଞ୍ଚା ପଣ୍ଡିତ କାଶ୍ୟପ ମିଶ୍ରଙ୍କ ଉପରକୁ ଗୁରୁଆଡ଼ୁ ଫିଙ୍ଗିବାର ପ୍ରଚେଷ୍ଟାରେ ଲାଗିଯାଇଥିଲା ପଦ୍ମଲୋଚନ ।

ସମସ୍ତେ ଶୁଣୁଥିଲେ । କେହି କେହି ବିଶ୍ୱାସ କରୁଥିଲେ ମଧ୍ୟ । କ୍ଷୀରନୀର ପରି ସମ୍ପର୍କ ଭିତରେ ଏମିତି ହଲାହଳ ବିଷ କେଉଁଠାରୁ ଆସିଲା । କେହି କେହି ମଧ୍ୟ କହୁଥିବାର ଶୁଣାଗଲା, "ସେ ପଦ୍ମଲୋଚନ । ତାକୁ ଯେ ନ ଚହ୍ନିଛି ସେ ନିଜକୁ ଚହ୍ନିପାରିବ ନାହିଁ । କେତେ ଘାଟରେ ପାଣି ପିଇ ପିଇ ସେ ଆସିଛି । କେତେ ଲୋକକୁ ପାଣି ମଧ୍ୟ ପିଆଇଛି । ଗୁରୁ ପଣ୍ଡିତ କାଶ୍ୟପ ମିଶ୍ର ତା ଆଗରେ କ'ଣ । ଯେତେଦିନଯାଏ କାର୍ଯ୍ୟଥିଲା ସେ ତାହା ହାସଲ କରିବାରେ ଲାଗିଥିଲା । ସଂସାରରେ କିଏ କାହାର । ସେ ଅନାସକ୍ତ, ଆସକ୍ତି ତା ନିକଟରେ କ୍ଷଣିକ ମାତ୍ର । ପଦ୍ମଲୋଚନ ସ୍ଥିତପ୍ରଜ୍ଞ । ସେ ଅଜର, ଅମର, ଚିରଶାଶ୍ୱତ । ସେ ସମସ୍ତଙ୍କର ଗୁରୁ । ତାର ଗୁରୁ ହେବାର ଯୋଗ୍ୟତା ଏ ପର୍ଯ୍ୟନ୍ତ କାହାର ହୋଇ ନାହିଁ ।

ଅନେକ ଅନେକ କଥା ତୁଣ୍ଡରୁ ତୁଣ୍ଡ ହୋଇ କାନରୁ କାନକୁ ଯାଇ ଗୁରୁଆଡ଼େ ଖେଳିଯାଇଥିଲା । ପଦ୍ମଲୋଚନ ଗୁରୁ କାଶ୍ୟପ ମିଶ୍ରଙ୍କ ଦୁଆରବନ୍ଧ ଡେଇଁ ପଡ଼ିବାର ଦେଖାଯାଉ ନଥିଲା । ପଣ୍ଡିତଙ୍କୁ କେହି କେହି ପଚାରିଲେ ସେ କହିବାର ଶୁଣାଯାଉଥିଲା, "ପ୍ରତ୍ୟେକ ମଣିଷ ତାର କର୍ତ୍ତବ୍ୟ କରିବା ଉଚିତ । କିଏ ପଚାରିଲା ବା କିଏ ନ ପଚାରିଲା ସେଥିରେ କୌଣସି ମୂଲ୍ୟ ନଥାଏ ।"

× × × ×

ଟୋପା ଟୋପା ବର୍ଷା ବିଚ୍ଛୁରିତ ହୋଇ ପଡୁଥିଲା । ସୌମେନ୍ଦ୍ର ପଣ୍ଡିତ କାଶ୍ୟପ ମିଶ୍ରଙ୍କ ସହିତ ଆଲୋଚନାରେ ବ୍ୟସ୍ତଥିଲେ । ହଠାତ୍ ପଣ୍ଡିତ କାଶ୍ୟପ ହସି ହସି କହିଲେ, "ଦେଖିଲଣି ସୌମେନ୍ଦ୍ର । ସୁନ୍ଦର ପ୍ରଚ୍ଛଦପଟ ଥିବା ଏଇ ବହିଟି ପଦ୍ମଲୋଚନର । ଭଲ ଗେଟ୍‌ଅପ୍ ହୋଇଛି । ବିଦେଶରେ ଏହାର ମୂଲ୍ୟ ବହୁତ ବଢ଼ିଯିବ । ମୁଁ ନଥିବା ବେଳେ ଆଜି ଆସି ଥୋଇ ଦେଇ ଯାଇଛି ।"

ତାଙ୍କ ହାତରୁ ସୌମେନ୍ଦ୍ର ବହିଟିକୁ ନେଇ ଏପାଖ ସେପାଖ ଦେଖିଲାବେଳେ ଗୁରୁଦକ୍ଷିଣାର ସନ୍ତକ ସ୍ୱରୂପ ପ୍ରଥମ ପୃଷ୍ଠାରେ ଲେଖାଯାଇଥିଲା, "ମୋର ଗୁରୁ ପଣ୍ଡିତ କାଶ୍ୟପ ମିଶ୍ରଙ୍କ ଉଦ୍ଦେଶ୍ୟରେ ।"



# ଶ୍ରାବଣୀର ଅନ୍ୟ ନାମ

ସେଦିନ ମୋର ମନେନାହିଁ । ମନେ ନପଡ଼ିବା ମଧ୍ୟ ସ୍ୱାଭାବିକ । ବର୍ଷ, ମାସ, ଦିନଦଣ୍ଡ କ୍ରମାଗତ ଭାବରେ ଚାଲିଛି ଯାହାକୁ ସମସ୍ତେ କହନ୍ତି ସମୟ । ମୋର କିନ୍ତୁ ଧାରଣା ପୃଥକ । ସମସ୍ତ ଭିତରର ଜୀବନ—ଜୀବନ ଭିତରେ ମଣିଷ ଅଙ୍କାବଙ୍କା ଗତିରେ, କେବେ କେବେ ସମାନ୍ତରାଳ ଭାବରେ ଚାଲେ । ଗ୍ରୀଷ୍ମର ପ୍ରଚଣ୍ଡ ତାପ ସହିଯାଏ—ବର୍ଷାରେ ଦିନେ ଜମ୍ମା କର୍ଦ୍ଦମାକ୍ତ ରାସ୍ତାରେ ପଡ଼ିଉଠି ଯୋଷାର ହୋଇ ଚାଲେ । ସମସ୍ତ ସହିତ ତାଳ ଦେଇ ମଣିଷକୁ ଚାଲିବାକୁ ହୁଏ । ସେ ସମୟ···କାହାର ? ମୋର ନୁହେଁ ନିଶ୍ଚୟ । ମୋର ନହେଲେ ଅନ୍ୟ କାହାର କେବେ ହୋଇ ନପାରେ ।

ମୋ ଜୀବନର ସେହି ଏକ ସମୟ । ଯାହାକୁ ଏକ ଘଟଣା କୁହାଯାଇପାରେ । ଦିନ, ମାସ ମନେ ନଥିଲେ ମୋର ସେଥିରେ ଯାଏ ଆସେ କେତେ । ଘଟଣାଟି ମୋ ପାଇଁ ସବୁକିଛି । ବୁଢ଼ିଆଣୀ ଜାଲରେ ଘର ସାରା ଭର୍ତ୍ତି ଅଳନ୍ଧୁ ଭିତରେ ମୋର କେମିତି ବା ମନେ ରହନ୍ତା ଦିନ ବା ମାସର ନାଁ । ଘରଟା କେବଳ ଅଳନ୍ଧୁ ଭର୍ତ୍ତି ହୋଇଥିଲେ କିଛି ନଥିଲା ମାତ୍ର ମୋର ମନଟା···ଏ ନିଆଁ ଲଗା ମନଟା ଯେ ମୋର । ସେଥିରେ କେତେ ଅଳନ୍ଧୁ । ତାକୁ ସଫା କରିବାକୁ ଆରମ୍ଭ କଲାମାତ୍ରେ ମନେପଡ଼େ ସେହି ଘଟଣାଟି ।

ସେ ମୋ ଜୀବନର ପ୍ରଥମ ଓ ଶେଷ ନାୟିକା । ତାଙ୍କ ନାଁଟି ଶ୍ରାବଣୀ ନୁହେଁ— ଏମିତି ଅନାବନା ନାଁ ମଧ୍ୟ ହୋଇ ପାରେନା । ସେ ନାଁରେ ଅଛି କେତେ ପୁଲକ, ଶୁଣିଲା ମାତ୍ରେ ମନ କୁରୁଳି ଉଠେ, ନାଚିବାକୁ ମନ ହୁଏ । ତାଙ୍କ ନାଁଟିକୁ ଧଳା କାଗଜରେ ଫର୍ଦ୍ଦ ପରେ ଫର୍ଦ୍ଦ ଲେଖିବାକୁ ଇଚ୍ଛା ହୁଏ । ମାରୁଓ୍ୱାଡ଼ ପଟିର ସେହି ପେଟା ମାରୁଓ୍ୱାଡ଼ ମହାଜନଟା ସକାଳୁ ସକାଳୁ ଧଳା କାଗଜରେ ରାମ ରାମ ଲେଖି ଚାଲିବା ପରି ମୁଁ ନାଁଟିକୁ ଲେଖେ, ଅତି ଯତ୍ନରେ, ମନରେ କେତେ ଆଶା ଓ ବିଶ୍ୱାସକୁ ଭର୍ତ୍ତି କରି ।

ଅନେକ ଦିନର କଥାର ସୂତା ଖିଅରେ ଝୁଲୁ ଥିବାର ସ୍ମୃତିର ପାହାଡ଼ ଉପରେ ମୁଁ ବସି ଗୁହାରିହେ । ମୋର ପ୍ରଥମ ନାୟିକା ମୋତେ ହାତଠାରି ଡାକନ୍ତି । ମୃଗ ନିଜ ନାଭିଦେଶରେ କସ୍ତୁରୀ ଥିବା ନଜାଣି କସ୍ତୁରୀ ଅନୁସନ୍ଧାନରେ ଇତସ୍ତତ

ବୁଲିବା ପରି, ମୋତେ ଲାଗେ ମୁଁ ଯେପରି ବୁଲି ବୁଲୁଛି । କୌଣସି ଲକ୍ଷ୍ୟ ନାହିଁ । ମୋର ସ୍ୱରପାଖରେ କେବଳ ସେ । ପ୍ରତ୍ୟେକ ଲୋମ ମୂଳରେ ତାଙ୍କର ସତ୍ତା । ତାଙ୍କ ଦେହର ବାସ୍ନା ମୋ ଦେହରୁ ବାରି ହୋଇ ପଡ଼େ । ତାଙ୍କ ଖାଉଥିବା ବାବା ଜର୍ଦ୍ଦାଦିଆ ପାନର ମହକ ମୋ ଓଠ ପର୍ଯ୍ୟନ୍ତ ମାଡ଼ିଆସେ । ତାଙ୍କର ସବୁ କିଛି ଯେପରି ମୋର ହୋଇ-ଯାଏ । ସେ ମୋତେ କମିଆଁ କଲଭଲି ଜଣାପଡ଼େ । ତାଙ୍କୁ ଦେଖିଲେ ମୋତେ ଡର ମାଡ଼େ । ତାଙ୍କ ଡ଼ମା ଡ଼ମା ଆଖିର ଗୁହାଣୀରେ ମୁଁ ହଜିଯିବା ବେଳେ ଭବିଷ୍ୟତକୁ ଖୋଜି ପାଏନା । ସେ ମୋତେ ଅଭୟ ଦେଇ କହନ୍ତି, ତୁମର ଭବିଷ୍ୟତ ହେଉଛି ମୁଁ । ପ୍ରତ୍ୟେକ ପୁରୁଷର ଉନ୍ନତରେ ନାରୀର ତ୍ୟାଗ ରହିଛି । ମୁଁ ତୁମ ପାଇଁ ସବୁ ତ୍ୟାଗ କରି ପାରିବ ।'' ତାଙ୍କର ଏତିକ କଥା ମୋତେ ଆହୁରି ନିବିଡ଼ ଭାବରେ ତାଙ୍କ ଆଡ଼କୁ ଟାଣିନିଏ । ଭଲ ପାଇବାର ବାସନାରେ ମୁଁ ମସ୍‌ଗୁଲ୍ ହୋଇଚାଲିବେଳେ ତାଙ୍କ ବ୍ୟକ୍ତିତ୍ୱର ଠୋସ୍ ପ୍ରବାହରେ ପ୍ରବାହିତ ହୁଏ ।

ସେ ମୋର ପ୍ରେମିକା ହୋଇ ପଡ଼ନ୍ତି । ଭିନ୍ନ ଅର୍ଥରେ ମୁଁ ତାଙ୍କୁ ପ୍ରେମ କରି ବସେ । ତାଙ୍କର ପ୍ରେମିକ ଅଛନ୍ତି କି ନାହିଁ ଜାଣେନା ମାତ୍ର ସେ ମୋର ପ୍ରେମିକା । ତାଙ୍କୁ ଦେଖିବା ମାତ୍ରେ ଯେ କୌଣସି ପୁରୁଷ ପ୍ରେମରେ ପଡ଼େ । ଭ୍ରମର ଭଳି କେତେ ପୁରୁଷ ଭ୍ରମର ତାଙ୍କ ଚାରି ପାଖରେ ଯେ ବୁଲି ନାହାନ୍ତି , କହି ହେବନି । ସେ କହନ୍ତି ଅନେକଙ୍କ କଥା । ସେମାନଙ୍କ ଭିତରେ ଯୁବକ, ବୃଦ୍ଧ ସମସ୍ତେ ଅଛନ୍ତି । ତାଙ୍କର ପରିଚିତ ବନ୍ଧୁମାନେ ଟିକିଏ ସାନ୍ନିଧ୍ୟ ପାଇବାକୁ ବ୍ୟାକୁଳ ହୋଇ ଉଠନ୍ତି । ସେମାନେ ବାରମ୍ବାର ଆସନ୍ତି । ପଦେ କଥାର ସମ୍ମୋହନ ଶକ୍ତିରେ ସେମାନଙ୍କର ପୌରୁଷ ତରଳି ଯାଏ । ପୁରୁଷ ପଣିଆର ରଙ୍ଗରେ ଦାଗଲାଗେ । ପୁରୁଣା ଶରୀରକୁ ଛାଡ଼ି ନୂଆ ଶରୀରକୁ ଗ୍ରହଣ କରିବାକୁ ବ୍ୟାକୁଳ ହୋଇଉଠେ ମନ । ସେ ସମସ୍ତଙ୍କୁ ଆଦର କରନ୍ତି । ପାଖକୁ ଭିଡ଼ିନେଇ ହଠାତ୍ ହାତ ଛାଡ଼ି ଦେବା ଫଳରେ ପୁରୁଷ ଗୁଡ଼ାକ ତଳେ ପଡ଼ିଯାନ୍ତି ନିର୍ଲିପ୍ତ ଓ ନିର୍ଜିବ ଭାବରେ । ପୁରୁଷ ପଣିଆ ହଜିଯାଇଥାଏ । ସମ୍ମୋହନ ଶକ୍ତିର ପ୍ରଭାବରେ ସେମାନେ ନିଜକୁ ଭୁଲିଯାଇ ନିଜର ସତ୍ତାକୁ ହଜାଇ ଦେଇଥାନ୍ତି । ସେ କହନ୍ତି, ମୋତେ ପୁରୁଷଙ୍କ ସହିତ ଖେଳିବାକୁ ଭଲଲାଗେ । ସମାଜରେ ନିଜକୁ ଅତି ସଚ୍ଚୋଟ, ଭଦ୍ର ବୋଲାଉଥିବା ଲୋକ ଗୁଡ଼ାକୁ ଦେଖିଲେ ମୋ ଆଖି ରକ୍ତାକ୍ତ ହୋଇ ଉଠେ । କେବଳ ଓଠ ଭଣ୍ଡୁଆନ୍ତି ସେ ଗୁଡ଼ାକ । ଟିକିଏ ସୁବିଧା ଦେଲେ ଝାମ୍ପି ପଡନ୍ତି ଶାଗୁଣା ଭଳି ମାଂସକୁ ଚିକ୍ ଚିକ୍ କରି ଦେବାକୁ । ନିଜ ଶରୀରରଶିଖ ଗୁଡ଼ିକ ଲୋମ୍ବ କୋମ୍ବ ହୋଇଥିଲେ ବି ଓହଲିଆ ମନନେଇ ବାରମ୍ବାର ମୋ ଆଡ଼କୁ ମାଡ଼ି ଆସିବା ବେଳେ ଦୟା ପରିବର୍ତ୍ତରେ ସେମାନଙ୍କ ପ୍ରତି ଘୃଣା ଆସେ; ହେୟ ଭାବ ଆସେ । କିଛି କହି ହୁଏନା ହଠାତ୍ ମାତ୍ର ସେମାନେ

ନିଜକୁ ନିଜେ ଫେରିଯାନ୍ତି ସେହି ରାସ୍ତାରେ ଯେଉଁ ବାଟ ଦେଇ ଆସିଥିଲେ । ସମସ୍ତେ ପୁରୁଷ ନୁହଁନ୍ତି । ଏ ପର୍ଯ୍ୟନ୍ତ କାହିଁ କେହି ପୁରୁଷକୁ ଭେଟି ପାରିଲି ନାହିଁ । ତୁମକୁ ଦେଖିଲେ ମନ ଖୁସି ହୁଏ ।"

ତାଙ୍କର ଏଇ ପଦକ 'ତୁମକୁ ଦେଖିଲେ ମନଖୁସି ହୁଏ' ରେ ମୁଁ ମନେମନେ ତାଙ୍କୁ ପ୍ରେମିକ ବୋଲି ଗ୍ରହଣ କରିନିଏ । ମାତ୍ର ତାଙ୍କ ପାଖରେ ବସିବା ବେଳେ ମୋତେ ଡର ମାଡ଼େ । ସେ ମୋତେ ବେଦାନ୍ତର ନିଗୂଢ଼ ତତ୍ତ୍ୱମାନ ବୁଝାନ୍ତି । ଆକାଶରେ ଏତେ ତାରକାମାନଙ୍କ ମଧ୍ୟରେ ମୁଁ କେବଳ ଚନ୍ଦ୍ରମା ଭଳି ତାଙ୍କ ଆଗରେ ପ୍ରତୀୟମାନ ହୁଏ ବୋଲି ସେ ବାରମ୍ବାର କହନ୍ତି । ଘଣ୍ଟା ଘଣ୍ଟା ଧରି ଗପିବା ବେଳେ, ସେ ମୋତେ ଜୀବନର ନିଗୂଢ଼ ତତ୍ତ୍ୱମାନଙ୍କୁ କହନ୍ତି । ମୋତେ ଲାଗେ ସେ ମୋର ଗୁରୁ । ଭାଗବତର ଆଖ୍ୟାନ ମନେପଡ଼େ । ନାରୀ ପୁରୁଷର ଗୁରୁ ଭାବରେ ଯୌନ ଚେତନାରୁ ଅତୀନ୍ଦ୍ରିୟ ରାଜ୍ୟକୁ ଯିବାର ବାଟ ବୋଲି ବର୍ଣ୍ଣନା କରାଯାଇଛି । ମୁଁ ତାଙ୍କୁ ମୋ ଜୀବନର ଗୁରୁ ଭାବରେ ଗ୍ରହଣ କରିବାକୁ ଚେଷ୍ଟା କରେ ।

ସେ ହସନ୍ତି—ନିର୍ଲିପ୍ତ ଓ ନିର୍ବିକାର ହସ । କିଛି କହନ୍ତି ନାହିଁ । ବେଳେବେଳେ କହନ୍ତି, " ଏହି ସଂସାରରେ ପ୍ରତ୍ୟେକ ବ୍ୟକ୍ତି ନିଜର ସ୍ନେହଶୀଳ ବନ୍ଧୁମାନଙ୍କୁ ଭଲ ପାଆନ୍ତି । ନିଜର ପ୍ରିୟଜନଙ୍କ ପାଇଁ ବ୍ୟକ୍ତି ସଂସାରର ବଡ଼ିକ୍କ ଗୁରୁତ୍ୱପୂର୍ଣ୍ଣ ବିଷୟକୁ ମଧ୍ୟ ତ୍ୟାଗ କରି ଦେଇଥାଏ । ଭଗବାନ ନିଜେ କହିଛନ୍ତି—"ମୁଁ ମହାଲକ୍ଷ୍ମୀ ଓ ବ୍ରହ୍ମାଦି ଦେବଗଣଙ୍କଠାରୁ ମୋର ଭକ୍ତମାନଙ୍କୁ ଅଧିକ ଭଲପାଏ । ତେଣୁ ନିଜ ଭକ୍ତର ପ୍ରଶଂସା ତୁଳନାରେ ମୁଁ କୌଣସି ପ୍ରକାର ସ୍ତୁତି, ସ୍ତୋତ୍ର ବା ପୂଜା ଅର୍ଚ୍ଚନାକୁ ପସନ୍ଦ କରେନାହିଁ । ଭକ୍ତଙ୍କ ବିନା ଭଗବାନଙ୍କୁ ଚହ୍ନେ ବା କିଏ ? ଜଳରେ ନୌକା ଥିଲେ କ'ଣ ହେଲା ଯଦି ଲୋକମାନେ ତାର ଉପଯୋଗ ନ କରନ୍ତି, ତେବେ ନୌକାର ମହତ୍ତ୍ୱ ବୃଦ୍ଧି ପାଇବ କିପରି ? ସୁନ୍ଦର ସୁନ୍ଦର ଉପଭୋଗ୍ୟ ସାମଗ୍ରୀ ଥିଲେ କ'ଣ ହେଲା ଯଦି ଉପଭୋକ୍ତା କେହି ନାହାନ୍ତି......।"

ହଠାତ୍ ତାଙ୍କର କଥା ବନ୍ଦ ହୋଇଯାଏ । ସେ ମୋଆଡ଼େ ଅପଲକ ଦୃଷ୍ଟିରେ ଅନାଇ ରହନ୍ତି ।

ସେ ମୋତେ ବାରମ୍ବାର ଆସିବାକୁ କହନ୍ତି । ମୋ ମନ ତାଙ୍କ ଆଡ଼କୁ ବେଶି ବେଶି ଆକର୍ଷିତ ହୋଇ ଦୌଡ଼ିବାକୁ ଆରମ୍ଭ କରେ । ମାତ୍ର ଗୋଡ଼ ଦୁଇଟା ଆଗକୁ ଉଠି ତାଙ୍କର ଏରୁଣ୍ଡି ବନ୍ଧ ଡେଇଁବାକୁ ମନବଳେନା । ମନରେ ଖୁବ୍ ଭୟ ଲାଗେ । ଦର୍ଶନ ଶାସ୍ତ୍ରର ନିଗୂଢ଼ ତତ୍ତ୍ୱମାନଙ୍କୁ ଶୁଣିବା ବେଳେ ମୋର ଶରୀର ଉପରେ ଜଡ଼ସଡ଼ ହୋଇଯାଏ ।

ଦିନେ ଦିନେ ତାଙ୍କର ନାଇଟ୍ ଗାଉନ୍ ପରିଧାନ କରି ସେ ମୋ ଆଗରେ ବସି ପଡ଼ନ୍ତି । ବୟସ ଖସି ଆସୁଥିଲେ ବି ତାଙ୍କର ନିଟୋଳ ଯୌବନରେ ପୁରୁଷ ଆକର୍ଷିତ ହୋଇଥାଏ । ସୁଉନ୍ନ ଗାଲ ଦୁଇଟାରେ ଚୁମ୍ବନ ଛୁଇଁଦେବାକୁ ମନହୁଏ । ସେ ନିର୍ବିକାର ଭାବରେ ମୋ ଆଗରେ ବସି ମୋ ମନକୁ କଳନା କରୁଥିବାର ଅନୁଭବ ହୁଏ । ସମୁଦ୍ରର ଉତ୍ତାଳ ଢେଉମାନ ବାରମ୍ବାର ଉଠି ପଡ଼ିବା ଭଳି ମୋ ଛାତି ଧଡ଼ପଡ଼ ହେଉଥାଏ । ଆଖି ଦୁଇଟା ସିଧା ତାଙ୍କୁ ଚାହିଁବାକୁ କୁଣ୍ଠାବୋଧ କରନ୍ତି । ସେ ମୋତେ ଯୌନ ଜୀବନର କାହାଣୀ ଶୁଣାନ୍ତି । ସେ କହନ୍ତି, "ପୁରୁଷର ଉତ୍‌ଫୁଲ୍ଲିତ ଲିଙ୍ଗ ନାରୀର ଯୌନାଙ୍ଗ ସହିତ ମିଳିତ ହେଲେ କେବଳ ଆନନ୍ଦ ମିଳେନା । ସେଥିପାଇଁ ମନ ଦରକାର ୀ ଶରୀରର ପ୍ରତ୍ୟେକ ବସ୍ତୁ ଯୌନ ମିଳନ ପାଇଁ ଅପରିହାର୍ଯ୍ୟ । ଲିଙ୍ଗ ଆତ୍ମା ସହିତ ସମ୍ପର୍କିତ ନହେଲେ ଯୌନ ମିଳନର ସୁଖ ବିରକ୍ତ ଲାଗେ । ସବୁ ପୁରୁଷଙ୍କୁ ଏକଥା ମାଲୁମ ନାହିଁ । ନାରୀ ସ୍ତନକୁ କେବଳ ମାଂସ ପିଣ୍ଡୁଳା ଭାବରେ ମର୍ଦ୍ଦନ କରି ରତିସୁଖ ଉପଭୋଗ କରି ହୁଏନା । ଏହା ଏକ ବର୍ଣ୍ଣାଢ଼୍ୟ ଫଳ । ଗଛରେ ଝୁଲି ରହିଛି ପୁରୁଷର ହାତର ସ୍ପର୍ଶରେ ହିଁ ଫଳର ସ୍ୱାଦକୁ ଗ୍ରହଣ କରି ହୁଏ ।"

ସେ କହିବାବେଳେ ସେହିପରି ଅନାମନା ଭାବ । ଆଖିରେ ଅନେକ ଆଶାର ତରଙ୍ଗ । ଅତ୍ୟାଧୁନିକ ଫ୍ରଏଡ଼ଙ୍କ ଦର୍ଶନର ବାଖ୍ୟାଠାରୁ ବାତ୍ସାୟନଙ୍କର କାମସୂତ୍ରର ନିର୍ଭୁଲ ତଥ୍ୟମାନଙ୍କୁ ଉଦାହରଣ ମାଧ୍ୟମରେ ଗୋଟି ଗୋଟି ହୋଇ ମୋ ଆଗରେ କହି ଚାଲନ୍ତି ।

ସେ ମୋ ପାଇଁ ଏକ ନୂତନ ଆବିଷ୍କାର । ସମୁଦ୍ରର ଢେଉ ମାନଙ୍କ ମଧ୍ୟରେ ହଜିଯିବା ବେଳେ ହଠାତ୍ ସମୁଦ୍ର ଭିତରେ ଏକ ଶିଳା ଯାହାକୁ ଦୃଢ଼ଭାବରେ ଧରି ଜୀବନକୁ ବଞ୍ଚାଇ ହୁଏ । କସ୍ତୁରୀ ମୃଗର ନାଭିରୁ ଉତ୍ପତ୍ତିତ ସୁଗନ୍ଧ ମିଳିଯାଏ ଯେପରି । ତାଙ୍କ ନିଜ ଜୀବନର ଅନେକ ଅକୁହା କଥାକୁ ମୋ ଆଗରେ ଥୋଇଦେବା ବେଳେ ସେ କହନ୍ତି, "ସଂସାର ପରିବର୍ତ୍ତନଶୀଳ । ଏଠାରେ ଦୃଷ୍ଟିଗୋଚର ହେଉଥିବା ପ୍ରତ୍ୟେକ ବସ୍ତୁର ସ୍ୱରୂପ ସତ୍ୟ ନୁହେଁ । ସବୁକିଛି ଅସାର, ନାଶବାନ୍ ଓ କ୍ଷଣଭଙ୍ଗୁର । ଏଗୁଡ଼ିକ ମଧ୍ୟରେ ସମାନ ଭାବରେ ଅବସ୍ଥିତ ଭଗବାନଙ୍କ ସତ୍ତା ହିଁ ଏକମାତ୍ର ସତ୍ୟ । ରୋଗ, ଶୋକ, ଚିନ୍ତା ଓ ବ୍ୟାକୁଳତାର ସନ୍ତାପର ଭାବେ ଏ ସଂସାରକୁ ସୃଷ୍ଟି କରିବାର ଉଦ୍ଦେଶ୍ୟ କ'ଣ ? ନିଜର କ୍ରୀଡ଼ା, ଚିତ୍ତ ବିନୋଦନ ଓ ମନର ସାମୟିକ ପରିବର୍ତ୍ତନ ନିମିତ୍ତ ଭଗବାନ ଏ ସଂସାରକୁ ରଚନା କରିଛନ୍ତି । ଏହା ଯଦି ସତ୍ୟ ତେବେ ଦୈତ୍ୟ, ଦାନବ, ଅଧର୍ମ ପାପ ଜନିତ ବିଭତ୍ସ ଦୃଶ୍ୟମାନ କାହିଁକି ସୃଷ୍ଟି ହୋଇଛି । ଏହା ମଧ୍ୟ ତାଙ୍କର ମନୋରଞ୍ଜନର ସାଧନ । ମିଠା ଖାଇ ଖାଇ ବିରକ୍ତ ଲାଗିଲେ ଖଟା, ପିତା, କଷା, ରାଗ ଖାଇବା ପାଇଁ ଇଚ୍ଛା ହୁଏ । ଧର୍ମ ଓ ଅଧର୍ମ ପ୍ରଭୁଙ୍କ ଇଚ୍ଛା ବିନା ପ୍ରବୃତ୍ତି

ହୁଏନାହିଁ । ଦୁଇଟି ଯାକ ପ୍ରଭୁଙ୍କ ଅଙ୍ଗ । ଧର୍ମ ଉତ୍ତମାଙ୍ଗ, ହୃଦସ୍ଥ ଓ ଅଧର୍ମ ପୃଷ୍ଠଭାଗ ରୂପେ କଳ୍ପିତ । ଶରୀର ରକ୍ଷା ନିମିତ୍ତ ଉତ୍ତମ ଓ ଅଧମ ସମସ୍ତ ଅଙ୍ଗର ଆବଶ୍ୟକତା ଥାଏ । ଶରୀରର ଯେଉଁ ମାର୍ଗରେ ଦୁର୍ଗନ୍ଧ ମଳସ୍ରାବ ହୁଏ ତାହା ଉତ୍ତମାଙ୍ଗ ନ ହେଲେ ମଧ୍ୟ ତାକୁ ଶରୀର ଠାରୁ ପୃଥକ କରି ହୁଏ ନାହିଁ । ସଂସାରରେ ଧର୍ମ ଅଧର୍ମ ସବୁବେଳେ ଲାଗି ରହିଛି । ମଣିଷର ପୁରୁଷାର୍ଥ କେବଳ ଭ୍ରମ ତା ମନରେ ଏକ ବାହାନା । ବାହାସ୍ଫୋଟ ମାରୁଥିବା ପୁରୁଷ ସ୍ୱନଗାର୍ଥି । ସମସ୍ତ କାଳର ଅଧୀନ ଶରୀରର ପ୍ରଶ୍ନ ବା ଆସୁଛି କେଉଁଠୁ ।”

“ତୁମ ସହିତ କଥା ହେବାବେଳେ ମୋତେ ଭଲ ଲାଗେ । ଘଣ୍ଟା ଘଣ୍ଟା ଧରି ଗପି ଚାଲିଲେ ମଧ୍ୟ ବିରକ୍ତ ଲାଗେନା । ସବୁ ପୁରୁଷଙ୍କ ସହିତ ଗପି ହୁଏନା ପାଞ୍ଚ ମିନିଟ୍ ସମୟ ଚାଲିଗଲେ ଯେପରି ଯୁଗଟିଏ ନଷ୍ଟ ହୋଇଗଲା ବୋଲି ଅନୁତାପ କରିବାକୁ ହୁଏ ।

ମୁଁ ତାଙ୍କ କଥାକୁ ଶୁଣେ । କିଛି କହେ ବେଳେବେଳେ । ଯୁକ୍ତିରେ ଈଶ୍ୱର ମିଳେନା । ସାମୟିକ ଆନନ୍ଦ ମିଳେ ଅବଶ୍ୟ ତାଙ୍କ ସହିତ ଯୁକ୍ତି କରି ଆନନ୍ଦ ପାଇବା ପରିବର୍ତ୍ତିରେ ନିଜକୁ ସମର୍ପିତ କରିବାରେ ବେଶି ଆନନ୍ଦ ମିଳେ । ମୋର ପୁରୁଷ ପଣିଆ ମାଈ ଛେଳି ପରି କେବଳ ମେଁ ମେଁ କରେ ।

ଏଇମିତି ସମୟଟା ଗଡ଼ିଚାଲେ । ଦିନ ଦିନ, ମାସ, ବର୍ଷ ହୋଇ କେତେ ସମୟ । ଅସୁମାରି ସମୟର ଭିତରେ ସେ ଓ ମୁଁ ଛନ୍ଦି ହୋଇ ଯାଉଥାଉ ।

ସେ ମୋତେ ଦିନେ ହଠାତ୍ ରାସ୍ତାରେ ଦେଖି ପକାଇ ରିକ୍‌ସାକୁ ଅଟକାଇଲେ । ବହୁ ଦିନ ହେଲା ଦେଖା ହୋଇନି ବୋଲି ଅଭିଯୋଗ ଓ ଆକ୍ରମଣ କରି ଯିବାକୁ କହିଲେ ।

ମୁଁ ତାଙ୍କ ଅନୁରୋଧକୁ ଏଡ଼ାଇ ପାରି ନଥିଲି । ତାଙ୍କ ଅନୁରୋଧ ମୋ ପାଇଁ ସବୁବେଳେ ଆଦେଶ ।

ଘରର ଦାମିକିଆ କାର୍ପେଟ ଉପର ଦେଇ ଚାଲିଗଲାବେଳେ ବୀଣାର ବେସୁରା ରାଗିଣୀ ମୋର କାନରେ ପଡ଼ୁଥିଲା । ଶୋଇବା ଘର ଖଟ ଉପରେ ସେ ବୀଣା ବଜାଉଥିଲେ । ମୁଁ ତାଙ୍କର ଶୋଇବା ଘରକୁ ପଶି ଯାଇଥିଲି । ଏହା ଥିଲା ମୋ ପାଇଁ ପ୍ରଥମ । କେବଳ ବୈଠକ ଘର ବ୍ୟତୀତ ତାଙ୍କର ଶୋଇବା ଘର ମୋ ପାଇଁ ଥିଲା ନିଷିଦ୍ଧ ପୁସ୍ତକ ପରି ।

ଏକ ବର୍ଷ ତକ୍ତପୋଷ ଉପରେ ଆସନ କରି ସେ ବୀଣାରେ ସ୍ୱର ଦେଉଥିଲେ । ମୁଁ ଚୁପ୍ ଚାପ୍ ତାଙ୍କ ଆଗରେ ବାଘ ଛାଲଟିଏ ପରି ବସି ପଡ଼ିଥିଲି ସାମୋକରା ବାଳ ଗୁଡ଼ାକ ଓହ୍ଲାଇ ପଡ଼ିଥିଲା ତାଙ୍କର ବକ୍ଷ ଦେଶରେ ।

ସେ ମୋତେ ଟିକଏ ଚାହିଁ ଦେଇ ହସି ଦେଲେ । ବୀଣାର ସ୍ୱରକୁ କିଛି ସମୟ ଅଭ୍ୟାସ କରି ସଯତ୍ନେ ତାକୁ ନେଇ ଥୋଇ ଦେଲେ । ବିଛଣା ଉପରେ ମୋ ପାଖରେ ବସି ମୁରୁକି ମୁରୁକି ହସୁଥିଲେ ।

ହଠାତ୍ ମୋ କୋଳରେ ମୁଣ୍ଡଟାକୁ ଥୋଇ ଦେଇ ମୋ ଆଖିକୁ ଅନିମେଷ ନୟନରେ ଚାହିଁ ରହିଲେ ।

ମୁଁ କିଛି ବୁଝି ପାରୁ ନଥିଲି । ସବୁବେଳ ପରି ଭୟରେ ଜଡ଼ସଡ଼ ହୋଇ ଯାଇଥିଲି । ସେ ମୋର ଅବସ୍ଥାକୁ ହୃଦୟଙ୍ଗମ କରିଭଳି କହିଲେ, "ହେ ପୁରୁଷ ଶ୍ରେଷ୍ଠ, ଭୟ କାହିଁକି କରୁଛ । ମୁଁ ତୁମର କଏ ତୁମେ ମନେ ବିଚାର କରିବ । ମୋ ମନ ଭିତରେ ଉଠୁଥିବା ଭାବନାକୁ ତୁମକୁ ବ୍ୟକ୍ତ କରୁଛି ।"

ସେତେବେଳକୁ ମୋ ହାତର ଆଙ୍ଗୁଳି ଗୁଡ଼ିକ ତାଙ୍କର ବାଳ ଗୁଡ଼ିକୁ ସାଉଁଳିବାକୁ ଲାଗିଯାଇଥିଲେ ।

ସେ କହି ଚାଲିଥିଲେ ମହାଭାରତର ଏକ ଆଖ୍ୟାନ "ଭୀଷ୍ମଙ୍କ ଶରଶଯ୍ୟା ସମୟରେ କୃଷ୍ଣ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲେ । କୃଷ୍ଣଙ୍କୁ ଦେଖି ଭୀଷ୍ମ କହିଲେ, "ହେ ଭକ୍ତ ବତ୍ସଳ; ଆପଣ ଯୁଦ୍ଧରେ ଅସ୍ତ୍ର ଧାରଣ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ମୁଁ ମଧ ଆପଙ୍କୁ ଅସ୍ତ୍ର ଧାରଣ କରାଇବ ବୋଲି ପ୍ରତିଜ୍ଞା କରିଥିଲି । ଏହା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସମସ୍ତେ ଭାବୁଥିଲେ—"ଦେଖାଯାଉ, କାହାର ପ୍ରତିଜ୍ଞା ରହୁଛି । ହେ ଭକ୍ତ ବତ୍ସଳ, ଆପଣ ସେତେବେଳେ ମୋ ପ୍ରତି କୃପାକରି ମୋର ପ୍ରତିଜ୍ଞା ରକ୍ଷା କରିଥିଲେ । ଆପଣ ମୋ ଶସ୍ତ୍ର ଘାତରୁ ଅର୍ଜ୍ଜୁନଙ୍କୁ ରକ୍ଷା କରିବା ପାଇଁ ହାତରେ ଚକ୍ର ଧାରଣ କରି ଉନ୍ମତ୍ତ ସିଂହ ପରି ମୋ ଆଡ଼କୁ ଝପଟି ଆସିଥିଲେ । ସେତେବେଳେ ଆପଣ କୁଞ୍ଚିତ କୁଟିଳ କେଶରାଶି ସହିତ ହୃଦୟର ବନମାଳ ଦୋହଲି ଯାଇଥିଲା । ପୀତାମ୍ବର କଟୀତଟରୁ ଖସିଯାଇ ଭୂମିରେ ଲେଟି ଯାଉଥିଲା । ଅର୍ଜ୍ଜୁନ ରଥରୁ ଡେଇଁ ପଡ଼ି ଆପଣଙ୍କର କ୍ରୋଧ ଶାନ୍ତ କରିବା ପାଇଁ ପାଦପଦ୍ମ ଧରି ପକାଇଲା । ଆପଣଙ୍କ ସେହି ଭୀମକାନ୍ତ ମୂର୍ତ୍ତୀ ଦେଖି ମୁଁ ବିମୁଗ୍ଧ ହୋଇ ହାତଯୋଡ଼ି ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଇଲି । ହେ ଦୀନବନ୍ଧୁ, ଆପଣଙ୍କର ସ୍ନେହ କରୁଣାସିକ୍ତ ସେହି ଦୃଷ୍ଟି ମୋ ଉପରେ ସଦା ରହିଥାଉ ଏବଂ ଆପଣଙ୍କର ମୁଖମଣ୍ଡଳର ସେହି ଛବିକୁ ମୁଁ ଚିରଦିନ ହୃଦୟରେ ଧାରଣ କରିଥାଏ ।"

ଏତକ କହି ସାରିବା ବେଳକୁ ତାଙ୍କର ଚକ୍ଷୁ ଦୁଇଟି ପୁରପୁରି ବୁଜି ହୋଇ ଯାଇଥିଲା । ସେ ମୋତେ ତାଙ୍କର ବାହୁରେ ଭିଡ଼ି ଧରିଥିଲେ । ଉଭୟଙ୍କ ଶରୀରର ଲୁଗା ଏକ ହୋଇ ଆମକୁ ଗୁଡ଼ାଇ ଧରିଥିଲା । ପରସ୍ପରକୁ କୋଳକରି ଦୁଇଟି ଶରୀର ଏକ ଆତ୍ମା ଭିତରେ ବାନ୍ଧି ହୋଇଯାଇଥିଲୁ ।

× × × × ×

ଅନେକ ଦିନପରେ, ମୁଁ ଆଜି ସେହି ସମସ୍ତକୁ ଖୋଜିଲା ବେଳେ, ମନର ଅଳନ୍ଧୁକୁ ଝାଡ଼ି ପରିଷ୍କାର କରୁଥିଲି । ସେ ମୋର କେବଳ ପ୍ରେମିକା ନଥିଲେ, ବନ୍ଧୁ, ସଖା, ସହଚର ରୂପରେ ମୋର ଗୁରୁ ଭାବରେ ଉଭା ହୋଇଥିଲେ ।



# ଧର୍ମକୁ ଖୋଜୁଥିବା ସଜାଆଁ

ପାହାନ୍ତିଆ ସକାଳୁ ଜନଦଟା ଗୃହଜନା ଭାଙ୍ଗିଗଲା । ବାହାରେ ବଡ଼ ପାଟିରେ ପାଟିଛୁଣ୍ଡ । ଶୀତଦିନର ସକାଳ । ଉଷୁମ ହୋଇ ପଶିଥିବା ରେଜେଇ ଭିତରୁ ବାହାରି ବାହାରିବାକୁ ମନ ଆଦୌ ହେଉ ନଥିଲେ ବି ଘଟଣାଟା କ'ଣ ଜାଣିବାକୁ ବାହାର ପଡ଼ିଲି ପଦାକୁ, ଦେହ ଉପରେ ଚଦରଟାକୁ ଜଡ଼ାଇ ଦେଇ ।

ଆଜି ସରସ୍ୱତୀ ପୂଜା । ଭୋରୁ ଭୋରୁ ଗାଁ ଦାଣ୍ଡରେ ଦଳ ଦଳ ପିଲା । ସରସ୍ୱତୀ ପୂଜାପାଇଁ ପିଲାମାନେ ଫୁଲ ତୋଳି ବାହାରିଛନ୍ତି । ଯୁକ୍ତିତର୍କ, ପାଟିଛୁଣ୍ଡ ପାଖରୁ ହାତାହାତି ହୋଇଯାଏ ଫୁଲ ନେବାକୁ କେନ୍ଦ୍ର କରି । ଚୌଧୁରୀଘର ନଈପାଖ ବଗିଚାରେ ଅସଂଖ୍ୟ ନାନା ବର୍ଣ୍ଣର ଫୁଲ ସେମାନଙ୍କୁ ଆକୃଷ୍ଟ କରି ନେଇଥିଲା ବଡ଼ ଭୋରରୁ । ଏହା ଏ ବର୍ଷର ନୂଆ ଘଟଣା ନୁହେଁ । ପ୍ରାୟ ପ୍ରତ୍ୟେକବର୍ଷ ତାଙ୍କବଗିଚାରୁ ଫୁଲ ପିଲାମାନେ ନିଅନ୍ତି । ମାତ୍ର ଏ ବର୍ଷର ବିଚକ୍ଷଣ ଉପାୟମାନ କାହା ମୁଣ୍ଡକୁ ଜୁଟୁ ନଥିଲା । ତିଣ୍ ନଈ ପଠାର ଗୋଟିଏ ପାଖରେ ଭୟଙ୍କର ଜଙ୍ଗଲଭଳି ବୁଦା ଓ ପାଣିର ସୁଅ । ସୁରକ୍ଷାରେ ନିବୁଜ ବାଡ଼ । ପିମ୍ପୁଡ଼ିଟିଏ ମଧ୍ୟ ଗଳିବାକୁ ବି ରାସ୍ତା ନାହିଁ । କେହି ସାହସ କରି, ସେ ବାଡ଼କୁ ସନ୍ଧ୍ୟାବେଳେ ପଶିଯିବ, ଏପରି କେହି ଟୋକା ଗ୍ରାମରେ ହାତଉଠି କହି ପାରିବ ନାହିଁ । ପ୍ରତ୍ୟେକ ବର୍ଷ ତେଣୁ ପିଲାମାନେ ସକାଳେ ତାଙ୍କର ଫାଟକ ନିକଟରେ ରୁଣ୍ଡ ହୁଅନ୍ତି । ଚୌଧୁରୀ ବୁଢ଼ା ନିଜ ହାତରେ ଫୁଲ ଟୋକେଇମାନ ବାଣ୍ଟି ଦିଅନ୍ତି ସବୁ ପିଲାଙ୍କ ଭିତରେ, ପ୍ରତ୍ୟେକଙ୍କ ଭାଗରେ କିଛି ନା କିଛି ପଡ଼େ ।

ମାତ୍ର ଏ ବର୍ଷ ଅଭାବନୀୟ ଘଟଣା ଘଟିଛି ।

ଜୋରରେ ପାଟି ହେଉଥିବା ସ୍ଥାନ ନିକଟରେ ପହଞ୍ଚିଲି । ଗାଁ ଶେଷ ମୁଣ୍ଡରେ ମହାଦେବଙ୍କ ମନ୍ଦିର । ସେଇଠି ଏକାଠି ହୋଇ ଯାଇଛନ୍ତି ସେତେବେଳକୁ ଗାଁର ଅର୍ଦ୍ଧାଧିକ ଲୋକ । ବୁଢ଼ା ଚୌଧୁରୀଙ୍କ ଏକମାତ୍ର ପୁତ୍ର ପ୍ରତାପ ଚୌଧୁରୀ ହାତରେ ଦୁଇ ନଳିଆ ଗୋଟେ ବନ୍ଧୁକଧରି ଛିଡ଼ା ହୋଇଛି । ଅସଭ୍ୟ ଭାଷାରେ ବକି ଚାଲିଛି, ଗାଁ

ପିଲାଙ୍କ ଉଦ୍ଦେଶ୍ୟରେ । ହାପ୍ ପ୍ୟାଣ୍ଟ ପିନ୍ଧିଥିବା ଦୁଇ ତିନିଗୋଟି ଟୋକାଙ୍କୁ ପାଖ ବରଗଛରେ ଶକ୍ତକରି ଲଙ୍ଗଳ ଦଉଡ଼ିରେ ବାନ୍ଧି ପକାଇଛନ୍ତି ଚୌଧୁରୀଙ୍କର କେତୋଟି ଦୁର୍ଦ୍ଧାନ୍ତ ପାଇକଲୋକ ।

କଥାଟା ବୁଝିବାକୁ ମୋତେ ବେଶି ସମୟ ଲାଗିଲା ନାହିଁ । ପ୍ରତ୍ୟେକ ବର୍ଷ ଚୌଧୁରୀ ମହାଶୟ ପିଲାଙ୍କୁ ଫୁଲ ଦେବାପାଇଁ ସେମାନଙ୍କଠାରୁ ତାର ମୂଲ୍ୟ ବାବଦକୁ ଶ୍ରମ ଆଦାୟ କରିଥାନ୍ତି । ପ୍ରାୟ ପ୍ରତ୍ୟେକ ତାଙ୍କ ବଗିଚାରେ ଘଣ୍ଟେ ଲେଖାଏଁ କାମ କରନ୍ତି । ମାତ୍ର ଏଥରକ ପିଲାମାନେ ଏକ ନୂଆ ଉପାୟ ସ୍ଥିରକରି ରାତିରେ ତାଙ୍କ ବଗିଚାରେ ପଶି ଫୁଲ ତୋଳିବା ସମୟରେ ଧରା ପଡ଼ିଯାନ୍ତି । ପ୍ରଦୀପ୍ତ ଚୌଧୁରୀଙ୍କର ଆଡ଼୍ଡାଜାଗା ସେହି ବଗିଚାଟି । ସେଠାରେ ଫସଲ କରିବାଛଡ଼ା ଯେତେକ ଦୁର୍ନୀତି ଓ ବିନାକାନୁନ କାର୍ଯ୍ୟ ହେଉଥିବାର ଲୋକମାନେ ଜାଣନ୍ତି । ମାତ୍ର ଚୌଧୁରୀଙ୍କ ଭୟରେ କେହି କହି ପାରନ୍ତି ନାହିଁ ।

ପିଲାମାନେ ଫୁଲ ତୋଳିବା ସମୟରେ ଟେର୍ ପାଇଗଲେ କେତେକ ଗର୍ହିତ କାର୍ଯ୍ୟର ନମୁନା । ସେଠାରୁ ଚୁପ୍‌ଚାପ୍ ଚାଲି ଆସିବାବେଳେ ପ୍ରଦୀପ୍ତ ଚୌଧୁରୀଙ୍କର ବନ୍ଧୁକର ଗୁଳିର ଅବାଜ, ସେମାନଙ୍କ ମନରେ ଭୟ ସଞ୍ଚାର କରିଥିଲା । ନ ଯଯୌ ନ ତସ୍ଥୌ ଅବସ୍ଥାରେ ସେଇଠି ଛିଡ଼ାହୋଇ ଧରା ପଡ଼ି ଯାଇଥିଲେ……ତାପରେ ସେମାନଙ୍କ ଉପରେ ଚାବୁକ ମାଡ଼ । ବରଗଛର ଲଙ୍ଗଳ ଦଉଡ଼ିରେ ବନ୍ଧାହେବା ଏବଂ ଗ୍ରାମବାସୀ ମାନଙ୍କର ପିଲାମାନଙ୍କୁ ଗ୍ରାଉଡ଼େବା ପାଇଁ ଆକୁଳ ମିନତି ।

ପ୍ରଦୀପ୍ତ ଚୌଧୁରୀ ମୋର ସହପାଠୀ । କଲେଜରେ ସାଙ୍ଗହୋଇ ପଢ଼ିବାବେଳେ ଯେତେକ ବାଜ୍‌ଙ୍ଗାମୀର ମୁଖ୍ୟନାୟକ ଥିଲେ ସେ । ନିଜ ଗ୍ରାମର ଏକମାତ୍ର ଚୌଧୁରୀର ସନ୍ତାନ ହେତୁ ମୋର ତାଙ୍କପ୍ରତି ଥିଲା ସ୍ନେହ ଓ ଶ୍ରଦ୍ଧା । ମାତ୍ର ସେ ନିଜ ଚରିତ୍ରକୁ କୌଣସି ଭାବରେ ସଂଶୋଧନ କରିପାରି ନଥିଲେ । ଅପର୍ଯ୍ୟାପ୍ତ ସମ୍ପତ୍ତିର ଅସଦ୍‌ବ୍ୟବହାର କିପରି କରିବାକୁ ହୁଏ, ତାହା ତାଙ୍କୁ ବେଶ୍ ଜଣାଥିଲା । ତେଣୁ କଲେଜର ନିୟମ କାନୁନ ପ୍ରତି କୌଣସି ଗୁରୁତ୍ୱ ନଦେଇ ସେ ଅବିଚଳିତ ଭାବରେ ସମସ୍ତ ପ୍ରକାର ଘୃଣ୍ୟ କର୍ମମାନ କରିଥିଲେ । ପ୍ରତ୍ୟେକ କ୍ଷେତ୍ରରେ ମୁଁ ତାଙ୍କୁ ବିପଦରୁ ରକ୍ଷା କରିଥିଲି, ମନରେ ଏଇ ଆଶା ନେଇ ଯେ ଭବିଷ୍ୟତରେ ସେ ଭଲ ମଣିଷ ହେବେ, ଗାଁର ମଙ୍ଗଳ କାର୍ଯ୍ୟରେ ଲାଗିବେ, ମାତ୍ର ତାହା ହୋଇପାରୁ ଏ ବିଧି ନିର୍ଦ୍ଦେଶ ନଥିଲା ।

ପ୍ରଦୀପ୍ତଙ୍କ ଆଗରେ ଛିଡ଼ାହୋଇ ପିଲାମାନଙ୍କୁ ଛାଡ଼ି ଦେବାକୁ ଅନୁରୋଧ କଲି । ଗ୍ରାମବାସୀ ମାନଙ୍କ ମଧ୍ୟରେ ମୋତେ ଦେଖି ସେ ଟିକିଏ ଚମକି ପଡ଼ିଲେ । କିଛି କହିବାକୁ

ତାଙ୍କର ସବୁ ସାହସ ନଥିଲା । ମୁଁ ଗ୍ରାମର ତରୁଣ ଯୁବକ ଦଳକୁ ଉତ୍ସ୍ରନା କରି ଧଳା କାଗଜରେ ସମସ୍ତ ଛଡ ସହିଦାକୁ ଲେଖି ଦସ୍ତଖତକରି ଧରାଇଦେଲି ଚୌଧୁରୀଙ୍କ ଘଗରେ ହାତରେ । ଫ୍ ଫ୍ ହୋଇ ସେ ମୋଠାରୁ କାଗଜଟିକୁ ନେଇ ଚିରି ପକାଇଁଲେ । ମୁଁ ପିଲାମାନଙ୍କୁ ବନ୍ଧନ ମୁକ୍ତ କରି ଘରକୁ ଫେରି ଯିବାକୁ ନିର୍ଦ୍ଦେଶ ଦେଇ ଫେରି ଆସିଥିଲି ।

ଦାଣ୍ଡପିଣ୍ଡାରେ ପହଞ୍ଚି ମୁହଁ ହାତ ଧୋଇ ପକାଇ ହାତରେ ବ୍ୟାଗଟି ଧରି ବାହାରିପଡ଼ିଲି ନିକଟରେ ଥିବା ଗାଁକୁ ଧାନ ଅମଳ କାର୍ଯ୍ୟ ତଦାରଖ କରିବାପାଇଁ । ସଡ଼କ ଉପରକୁ ଉଠିଛି କି ନାହିଁ ସନିଆ ରିକ୍ସାବାଲା ମୋତେ ଦେଖିପକାଇ ଗାଡ଼ିଟାକୁ ସେଇଠି ଅଟକାଇ ଦେଇ ଓହ୍ଲାଇ ପଡ଼ିଲା ।

"ନନା ଗୋସେଇଁ, ଜୁହାର । କେବେ ଆସିବାହେଲା ଘରକୁ । ମୁଁ କେତେଥର ମା'ଙ୍କୁ ପଚାରିଲିଣି । ସନିଆଁ ଗରିବଟା ସବୁବେଳେ ଆପଣଙ୍କ କଥା ମନରେ ପକାଏ । ବସନ୍ତୁ ରିକ୍ସାରେ, ଛାଡ଼ିଦେବି, ବିଲକୁ ଯାଉଛନ୍ତି ବୋଧହୁଏ ।" ବେଶି ଚାଲିବାର ଅଭ୍ୟାସ ନଥିବା ହେତୁ, ଧଇଁସଇଁ ହେବାରୁ ରକ୍ଷା ପାଇଯାଇ ତା ରିକ୍ସାରେ ବସି ପଡ଼ିଲି । ସେ କହିବାକୁ ଆରମ୍ଭ କରିଦେଇଥିଲା । ତା ନିଜକଥା ।

"ନନା ଗୋସେଇଁ, କାଲି ମୋର ନିଷାପ ଅଛି । ମୁଁ ରିକ୍ସା ଟାଣି ପେଟ ପୋଷୁଛି । କାହାକୁ କେତେ ନେହୁରା ହେବି ମୋ ଜମି ଖଣ୍ଡିକ ଫେରାଇ ଦେବାକୁ । ଚୌଧୁରୀ ବୁଢ଼ାଙ୍କ ପାଖେ ବନ୍ଧା ପକାଇଥିଲି ନଈପଠାର ଜମିଖଣ୍ଡିକ ଶହେ ଟଙ୍କାକୁ ଆଜକୁ ଦଶବର୍ଷ ତଳେ । ବର୍ଷକ ପରେ, ମିଆଦ ପୂରିବା ପୂର୍ବରୁ ତାଙ୍କ ନାମରେ କରି ନେଇଛନ୍ତି । କେତେ ନେହୁରା ହେଲିଣି, ଗୋଡ଼ତଳେ ପଡ଼ିଲିଣି, କେହି ଶୁଣୁନାହାନ୍ତି । ଗରିବ ଲୋକର କ'ଣ ଇଜ୍ଜତ ଧର୍ମକୁ ଡାକକରି ପଡ଼ିରହିଛି । କାଲି ଗାଁର କେତେକ ଲୋକଙ୍କୁ ଡାକିଛି, ନିଷାପ କରିବି । ଧର୍ମକୁ ଡାକ ଦେଇଛି । ନନା ଗୋସେଇଁ, କ'ଣ ମୁଁ ଜିତିବିନି । ତୁମ ତୁଣ୍ଡରୁ ଦିପଦ ଶୁଣିଲେ ମନଟା ଖୁସି ହେବ । ମୋ ଧନ କ'ଣ ଫେରିପାଇବି ନାହିଁ । ସେ ନଈପଠାରେ ଚୌଧୁରୀ ବୁଢ଼ା କେତେ ଫସଲ କରୁଛି । ଆମକୁ ନେଇ ବେଠି ଖଟାଉଛି । ତା ପୁଅ ହେସ୍ୱ ବେପାର କିନିଷ ଲୁଚାଇ କରି ରଖୁଛି । ମୁଁ ତ ଅଳ୍ପ ଫସଲ ଫଳାଇ ପାରିବି । ଏକଲା ପେଟକୁ ପୋଷିବାରେ କ'ଣ ଡର । ବାହା ହେଇନି ମାଇକିନାଟେ ଆଣିଥିଲି । ବରଷଟିଏ ଭଲ ଘରେ ରହିଥାନ୍ତା, ଚୌଧୁରୀ ଟୋକା ତାର ଇଜ୍ଜତ ସାରିଦେଲା । ଅଇଁଠାଟକୁ ଫିଙ୍ଗିଦେଲା ତାର ଚାକର ଗୁଡ଼ାଙ୍କ ଆଡ଼କୁ । ସେଇ ନଈପଠା ବଗିଚାରେ ଡାଟିଘରଟାରେ ରହିଛି । ସବୁଦିନେ ତାର

ରକ୍ଷିତଦାସ ଗୁଡ଼ାକ ତା ଦେହକୁ ଝୁଣି ପକାଉଛନ୍ତି । ପ୍ରତିବାଦ କରିଥିଲି, କେହି ଶୁଣିଲେ ନାହିଁ ନନା ଗୋସେଇଁ । ଓଲଟା କହିଲେ ମାଇକିନିଆଁ ଟାକୁ ପୋଷିପାରିଲି ନାହିଁ, ସେ ତା ଦେହ ଦେଇ ଚଳୁଛି । ମୁଁ ସିନା ଶାସ୍ତ୍ର ପଢିନି, ଠାକୁରଙ୍କ ଦୁଆର ମାଡ଼ିନି, ହେଲେ ନନା ଗୋସେଇଁ ତୁମେ ପରା ଏତେ ପଢ଼ିଛ । ଭାଗବତ କଥା ବଖାଣୁଛ, ମୋ କଥା କ'ଣ ତୁମ ମନକୁ ଘେନା କରୁନି । ମୁଁ କ'ଣ ନ୍ୟାୟ ପାଇବନି । ତୁମେ କୁହ ନନା ଗୋସେଇଁ । ତୁମ ତୁଣ୍ଡରୁ ଶୁଣିଲେ ମୋର ସବୁ ଠିକ୍ ହୋଇଯିବ ।"

ଚୁପ ହୋଇଗଲି ସନିଆଁ ! ରିକ୍ସାଟି ଗଡ଼ି ଚାଲିଥିଲା । ମୋର ଓହ୍ଲାଇବା ସ୍ଥାନ ଆସିଗଲା । ମୁଁ ତାକୁ ସେଠାରେ ରିକ୍ସା ରଖିବାକୁ କହି ଓହ୍ଲାଇ ପଡ଼ିବା ବେଳେ ସେ ମୋ ଗୋଡ଼ତଳେ ପଡ଼ିଯାଇ କହି ଉଠିଲା, "କହୁକହୁନା କାହିଁକି ନନା ଗୋସେଇଁ । କେତେଦିନ ଧରି ତୁମକୁ ଭରସା କରି ରହିଛି ।" ମୁଁ ତା ଆଖିକୁ ଭରସା କରି ଚାହିଁ ପାରୁନଥିଲି । ଇତିହାସର ପୃଷ୍ଠାକୁ କେବଳ ଓଲଟାଇ ଚାଲିଥିଲି । ପଢ଼ିଥିବା ଅନେକ ଲୋମହର୍ଷଣ ଘଟଣା ଗୁଡ଼ିକ ସହିତ ସ୍ୱାକୁ ତୁଳନା କରୁଥିଲି । ସନିଆଁ ଘଟଣାପରି ଘଟିଥିବା ଆଖିରେ ଦେଖି ପାରୁନଥିଲି । ସେ ବାରମ୍ବାର ମୋଠାରୁ ପଦେକଥା ଶୁଣିବାକୁ ଅଳିକରି ଚାଲିଥିଲା । ମୁଁ ତାକୁ ଟେକି ଉଠାଇ କୋଳରେ ଭିଡ଼ିଧରି କହିଁ କହିଁ କାନ୍ଦିଉଠି କହିଲି, "ସନିଆଁ, ଧର୍ମ ତୋର । ତୋରି ଜୟ ହେବ ନିଶ୍ଚୟ ।"

ଖୁସିରେ ଦଣ୍ଡବତ ପକାଇ ସନିଆଁ ରିକ୍ସାରେ ଚାଲିବାକୁ ଆରମ୍ଭ କରି ଦେଇଥିଲା । ମୁଁ ତାର ଗତିପଥକୁ ଅନାଇଁ ରହିଥିଲି ।



# କୋଇଲି ଲୋ କେଶବ ଯେ ମଥୁରାକୁ ଗଲା

ଆକାଶରେ ଗୋଟିଏ ଗୋଟିଏ ତାରା ପଡ଼ିବାକୁ ଆରମ୍ଭ କରି ଦେଇଥିଲେ । ସୂର୍ଯ୍ୟଙ୍କର ଅସ୍ତାଚଳଗାମୀ ଲୋହିତ ରଙ୍ଗରେ ଚମକୁଥିଲା ପଶ୍ଚିମ ଦିଗଟା । ସଦାମା' ବ୍ୟସ୍ତହୋଇ ପଡ଼ିଲା । ବାହାରେ ଗଦାଗଦା ବରି ଓ କୋଳଥ । ଅଦିନିଆଁ ମେଘଟା ଉପରେ ଆଦୌ ଭରସା କରି ହୁଏନା । କେତେବେଳେ ଟପ୍ ଟପ୍ ହୋଇ ପଡ଼ିବ କିଏ ଜାଣେ । ଗତ ଦି'ଦିନ ହେଲା ପାଗଟା କାଉଁଳିଆ କରିଥିଲା । ଏପର୍ଯ୍ୟନ୍ତ ମେଘଆଣିଆ ଆକାଶରୁ ଛୁଟି ନାହିଁ । ନିଆଁ ଲଗା ମେଘଟା କାହିଁକି ଏମିତି କରେ କେଜାଣି । ଭଲକରି ଅସରାଏ ବର୍ଷା ହୋଇଗଲେ ହୁଏତ ଭଲଭାବରେ ଶୁଖା କରି ହୁଅନ୍ତା ।

ସଦାମା' ବ୍ୟସ୍ତ ହୋଇପଡ଼ିଲା ।

ସଞ୍ଜବେଳ ହେଲାଣି । ଏ ପର୍ଯ୍ୟନ୍ତ ସଧା ବଲା ହୋଇନି । ଏ ମନଟା ପୋଡ଼ା-ଯାନ୍ତା ପରା । ନିଆଁ ନଗା ମନଟାରେ କେତେ କଥା ଯୁଟିଯାଏ ବେଳଥବେଳ ନ ଥାଇ । ବରିଗୁଡ଼ାକୁ ଗୋଟାଇବାକୁ ପଡ଼ିବ । ପିଣ୍ଡା ଉପରେ ଥାଇଠି କରି ନଦେଲେ ସଧ ରାତି ଅଧରେ ବର୍ଷା ହେଲା ପୁଣି ହଇରାଣ ।

ଉବଡ଼ବ କରି ଘରଭିତରକୁ ପଶିଗଲା ସେ ।

ଅଣ୍ଡାଳ ପକାଇଲା ସଧା କନ୍ୟା ବକଟେ । ଧଳାକନାଟା ହେଲେ ହାତ ପାଆନ୍ତାରେ ମିଳିଯାନ୍ତା । କେଉଁ ଧଳା ଲୁଗାଟେ ଅଛି ଯେ । ଏ ଟୋକା ଦି'ଟା ସୁଟ୍ ପେଣ୍ଟ ଗଲେଇ ବୁଲନ୍ତେ । ପୁରାରେ ଭୂଲାରେ ବଲତା ମିଳେ । କିଏ ଆଣି ଦେଉଛି ? ସାନଟୋକା ଗଦାକୁ କେତେଥର କହିଲଣି । ସେ ଦବ ଦବ ବୋଲି ବଟନ୍ତ ହୋଇଗଲା । ସଦାକୁ କହିଥିଲେ ଏତେବେଳକୁ ଆଣି ଦେଇଥାନ୍ତା । କେତେ କହିବ ସେ ଟୋକାଟାକୁ । ସବୁ ଖବର ବୁଝି ବୁଝି ଦେହଟା ତାର କଣ୍ଢା ହୋଇଗଲାଣି । ଯେଉଁ ଡେଉ, ନିଆଁ ଲଗା ମନଟା କାହିଁକି ଏମିତି ହଇରାଣ କରୁଛି କେଜାଣି ।

ବନ୍ଧ ଫାଙ୍କରେ ସଞ୍ଜକନାଟାକୁ ରଖିଦେଇ ଇଆଡ଼େ ସିଆଡ଼େ ଖୋଜୁଛି । ସଞ୍ଜ ବଳିଲ ସଦାମା’ ନଠେଇ ନଠେଇ ଚମଧୁକୁଧୁକୁ ହାତରେ । ଦ’ଗୁଣଟା ବଳି ପକାଇଲା । ନଉଡା ଗୁଆଘିଅ ଟିକଏ ଆଣି ବୋଲିଦେଲା ତା’ଉପରେ, ଜିଆଁସିଲି ମାଇ ଲଗାଇ ଦେଲା ବଳିତାକୁ । ଚଉରା ପାଖରେ ସଞ୍ଜଦୀପଟିକୁ ଥୋଇଦେଇ ମୁଣ୍ଡରେ ଓଢ଼ଣା ଟାଣି ଜୁହାର ପକାଇଲା । ମନେ ମନେ ଗୁଣୁ ଗୁଣୁ ହୋଇ କ’ଣ ଦ’ପଦ ବୋଲି ଦେଉଥିଲା । ଯେତେବେଳେ ସିଏ ଦେଖିବ, ସଦାମା’ କଣ ଗୋଟେ ପ୍ରାୟ ଗୁଣୁ ଗୁଣୁ ହେଉଥାଏ । ହନେ ତାକୁ ପଗ୍ଭରିଲାରୁ କହିଲା, “କଣ ଆଉ ବୋଲିବ ବା ପାଠ ଭଲୁପୁସ୍ତା ସେ ପାଖ । ଠାସକୁମାର ଯେତକ ମନେ ରହିଥିଲା, କାମ ଚଳେଇ ଦେଉଛି ସେଥିରେ । ଆମ ବେଳରେ କେଶବ କୋଇଲି, ମଥୁରାମଙ୍ଗଳ ଗୃହାଳୀରେ ପଢ଼ା ହେଉଥିଲା । ସେଥିରୁ ପଦେ ପଦେ ମନ ଯେତେବେଳେ ହେଲା ବୋଲିଦିଏ । “ଚଉରାମୂଳେ ହାତଯୋଡ଼ି ଚୁପଚୁପ ବସିଥିଲା ସଦାମା ’।” ପଦଟିଏ ମନେ ପଡ଼ିଗଲା,“କୋଇଲି ଲୋ ! କେଶବ ଯେ ମଥୁରାକୁ ଗଲା ।” ନା, ଆଉ ମନେ ପଡୁନାହିଁ । କେତେଦିନ ଗଲାଣି, ବୟସ ବଢ଼ିଗଲେ ମନ ଭୁଲିଯାଏ । ସଞ୍ଜ ଦେଇସାରି ଦୁଇହାତ ଯୋଡ଼ି ନମସ୍କାର କଲା ସଦାମା,’ ଉଠି ଛିଡ଼ା ହେଲା । ଆକାଶରେ ଅନେକ ତାରା ପଡ଼ିଲେଣି ଏ ପର୍ଯ୍ୟନ୍ତ କାମ କିଛି ହୋଇନି । ବସ, କୋଳଥକୁ ଉଠାଇବାକୁ ପଡ଼ିବ । ଦେହରେ କେଉଁଠୁ ବଳ ଆସୁଛି ଯେ କାମ କରିବାକୁ ମନ ହେବ । ବୟସ ଗଡ଼ିଗଲାଣି । ପିଲାଦିନରୁ କାମ କରି କରି ଅଣ୍ଟାପିଠି ବଙ୍କା ହୋଇଗଲା ।

ସଦାମା’ ଅନ୍ୟମନସ୍କ ଭାବରେ ପୁଣି କ’ଣ ଭାବିବାକୁ ଲାଗିଗଲା । ସେ କ’ଣ ଜାଣିଥିଲା ଗଦାଟା ଅମଣିଷ ହେବ ବୋଲି । ଆଶା ବୈତରଣୀ ନଈପରି, କେତେ ଆଶା । ସଦା, ଗଦା ଯୋଡ଼େ ଭେଣ୍ଡା ଟୋକା ତା କଥାମାନ ଭଙ୍ଗାଘରକୁ ସୁନା କରି ଦେବେ । କିନ୍ତୁ କିଏ ଭାବିଥିଲା ଗଦାଟା ସତକୁସତ ଅମଣିଷ ହେବ । ଗଦାଟା ମଣିଷ ହୋଇଥିଲେ ତାକୁ ବୃଢ଼ୀ ବୟସରେ କ’ଣ କାମ କରିବାକୁ ପଡ଼ନ୍ତା । ହନେ ହନେ ଭାବେ, ଆଉ କାମ କରିବ ନାହିଁ । ମାତ୍ର ତା କଥାକୁ ଶୁଣିବ କିଏ ? ଶୁଣିବା ଲୋକ ଅଳ୍ପଦିନେ ବୁଆ ଦ’ଟାଙ୍କୁ ଛାଡ଼ି ଚାଲିଗଲା । ଏ ସଂସାରରେ କିଏ ବା କାହାର । ସବୁ ମାୟା, ଭେଲିକି । ତଥାପି କେତେ ଆଶା ମୋ ପୁଅ, ମୋ ଘର । ଏ ବୃଢ଼ୀ ବୟସରେ କାମ କରି କରି କ’ଣ ନେଇଯିବ ଏ ସଂସାରରୁ । ତଥାପି କାମ କରିବାକୁ ହେବା ଏ ପେଟ ଗୁଖଣ୍ଡିକ ପାଇଁ ସେମାନେ ତାଙ୍କ କଥା ବୁଝିଲେ ବୁଝନ୍ତୁ, ନ ବୁଝିଲେ ନାହିଁ । ମାତ୍ର କାହିଁକି କିଏ ଶୁଣିବ । ଯାହା କିଛି କହିଲେ ସଦା ଟିକିଏ ଶୁଣେ । ମାତ୍ର ଗଦା— କେଉଁ ଜନ୍ମରେ କି ପାପ କରିଥିଲି କେଜାଣି ଏଭଳି କୁଳାଙ୍ଗାର ପୁଅ ଜନ୍ମ ହେଲା । ସେ ଯଦି ଟିକିଏ ମଣିଷ ହୋଇଥାନ୍ତା, ତେବେ ମୋର କ’ଣ ଚିନ୍ତା ଥିଲା ।

ଧୀରେ ଧୀରେ ଉଠି ଛିଡ଼ା ହେଲା ସେ । ଝୋକେଇଟାକୁ ଅଗଣାରୁ ଆଣି ବର କୋଲଥକୁ ବୋହିବାକୁ ଲଗିଲା । ଗୁଘୁଗୁଘୁ ହୋଇ ସେହି ପଦଟିକୁ ବାରମ୍ବାର ଦୋହରଉଥିଲା ।

ଆକାଶଟା ତୋଫା ଦଶୁଥିଲା । ସଦାମା'ର ବଶବୃକ୍ଷା ସ୍ତୃଳଥିଲା ।

ମନ ସିନା କାମ କରିବାକୁ ଆଗଭର; ହେଲେ ଶରୀର- କରିପାରଲେ ତ !

ଛୁଆ ଦ'ଇଟା ସାନ ସାନ ଥିବାବେଳେ କେତେ କାମ କର ପକାଉ ନଥିଲା ସେ । ବର, ମୁଗ ବାଢ଼େଇ ଅମଲ କର ହାଟକୁ ପଠାଉଥିଲା । ଟଙ୍କା ବଞ୍ଚାଇ ଛୁଆ ଦ'ଟାଙ୍କ ପଢ଼ାଉଥିଲା କଲେଜ ମାଡ଼ିଲେ ପାଠ ଆରମ୍ଭ ହବ ବୋଲି ସେଦନ ସନାସ୍ୱର୍ଣ୍ଣା କହିଲା । ତା'ପୁଅ କଲେଜରେ ପଢ଼ୁଛି । ସେ ମାଇକନଆର କ'ଣ କମ ଫୁଟାଣି । ଦନେ ଦନେ ଆସି ଭଲେଇ ହୋଇ କହିବ, "ସଦାମା', କାହିଁକ ତୋ ଛୁଆଙ୍କୁ ପଢ଼ଉଛୁ । ଅପର୍ଯ୍ୟାପ୍ତ ଟଙ୍କା ଖର୍ଚ୍ଚ । ଦେଖିନୁ, ଆମ ସନା ପିଲ୍ଲା ତା' ବାପା କେତେ ଖର୍ଚ୍ଚ କଲେଣି । କଲେଜରେ ଆଉ ଦ'ବର୍ଷ । ସରଗଲେ ସେ ଆଇ. ଏ. ଏସ୍. ହେବ ଲୋ । ଖାଲି କାର, ଟଙ୍କା ଓ ଲୋକ । ଦେଖିବୁ ଲୋ ସନାର କସ୍ମମତ । ସେଥିପାଇଁ ଖାଲି ଟଙ୍କା । ତୋ' ପାଖରେ ଟଙ୍କା କାହିଁ ? ଦେଇପାରିବୁ ? ପଢ଼ନା ପାଠ । କଏ ତୋର ଘରକାମ କରିବ । ଲଗାଇ ଦେ ବର, କୋଲଥ୍ କାମରେ । ଏ ବେଲରୁ ରୋଜଗାର କର ତୋତେ ପୋଷିବେ । ପାଠରେ କେଞ୍ଚାହେଲେ ପୁଣି ହଇରାଣ ହେବୁ । "ଏମିତ କେତେଥର କେତେ କଥା । ଗାଁ ସାରା ସମସ୍ତେ । ସଦାମା ଗାଈ ପାଳିଛି, ଛେଳି ରଖିଛି, ପୁଅ ତାର ପାଠ ପଢ଼ିବେ । ବଡ଼ ବଡ଼ ଗଲେ ଫସରଫାଟି, ସାନ ଆସିଛନ୍ତି ବେସରବାଟି ।" କେତେ ଟାହି ଟପ୍‌ପରା । କଏ କ'ଣ କାହା ପାଟିରେ ହାତ ଦେଇଛି । ଯାହାର ଯାହା ଆସିଲା ସେ କରିବ ଓ କହିବ । ସଦାମା' ତା କାର୍ଯ୍ୟ କର ସ୍ତୃଲିଥିଲା । ପିଲା ଦୋଟି ଈଶ୍ୱରଙ୍କ ଦୟାରୁ ପାଠ ପଢ଼ିଲେ । ବହୁ ହଇରାଣ ହରକତ ଭିତରେ କଲେଜ ମାଟି ମାଡ଼ିଲେ, ଭଲ କଲେ । ସଦା ଉପରେ ସବୁ ଦାୟିତ୍ୱ । ସେ ବୁଝିବାକୁ ଚେଷ୍ଟା କରୁଥିଲା । ଗଦା ଆଉ ପଢ଼ୁ, ତାର ଇଚ୍ଛା । କ୍ଷୀର ନୀର ସମ୍ପର୍କ ପର ଚଳି ଯାଉଥିଲେ ଉଭୟେ ।

ଗଦା ପାଠରେ ଭଲ କଲା । ଇଉନଭରସିଟ୍‌ରେ କ'ଣ ଗୋଟେ ପଦକ ମିଳିଲା ତାକୁ । ସଦାମା' ମନ କୁଣ୍ଢେମୋଟ । ପୁଅ ବଡ଼ ସ୍ତ୍ରକର କରିବ । ଗାଁ' ସାରା ଏ ପର୍ଯ୍ୟନ୍ତ କେହି ଏତେ ପାଠ ପଢ଼ିନାହାନ୍ତି । ଗଦାର ନାଁ ବାହାରିଲା ଖବରକାଗଜରେ ଫଟ ସହିତ । ସଙ୍ଗେ ସଙ୍ଗେ ସ୍ତ୍ରକର ।

ସଦାମା, ମନ କୁଣ୍ଢେମୋଟ । ତା' ଘର ଧନ ରତନରେ ପୂରିଯିବ । କେଉଁଠି ଥୋଇବ ସେ । ଭଗବାନ ଛୁଆ ଦ'ଟାଙ୍କୁ କେବଳ ପରମାୟୁ ଦେଇଥାନ୍ତୁ । ଆଉ ଦନ

କେଇଟାରେ ତା' ଦୁଃଖ ଘୁଞ୍ଚିଯିବ । ଖାଲି ଗଣି ଗଣି ଟଙ୍କା ଓ ନୋଟ ଥାକ । କେଉଁଠି ରଖିବ ଏତେ ଟଙ୍କା । ଭଗବାନ ତା' କଥା ଶୁଣିଲେ । ମା' ମଙ୍ଗଳାଙ୍କ ନିକଟରେ ଧନ ଧନ ଧରି କେତେ ନେହୁରା ସେ ନ କରିଛି । ଘିଅ ଦୀପ ଦେଇଛି । ବଡ଼ସିଙ୍ଗାର ବେଶ କରିଛି । ମୋ 'ସଦା, ଗଦା'ର ଦୁଃଖ ଦୂର କରିଦଅ ମା । ତୁମକୁ ସକଳ ଐଶ୍ୱର୍ଯ୍ୟ ମଧ୍ୟରେ ବୁଡ଼ାଇଦେବି । ଭାଙ୍ଗି ଯାଇଥିବା ମନ୍ଦିର ଫାଟରେ ଚୂନ ଲେପିବି । ଧବଧାଉଳ କରିଦେବି ତୋ'ର ମନ୍ଦିର । କେତେ ଯାଗଯଜ୍ଞ କରିବି । ସିନ୍ଦୁର ତୋ ମୁଣ୍ଡରେ ମାଖିଦେବି । ମା, ମା'ମଙ୍ଗଳାଲେ ତୁ ଦୟା କଲେ ମୋ ସଦା, ଗଦା ମଣିଷ ହେବେ । କେତେ ଆତୁର ତାଙ୍କର ଜବାବ ମିଳିଛି ଏତେ ଦିନେ । ସଦା, ଗଦା ମଣିଷଙ୍କ ଭିତରେ ମଣିଷ ହୋଇଛନ୍ତି !

ତା'ର ଆଉ ଡର କାହାକୁ । ଗାଁ'ସାରା ବୁଲି ବୁଲି କହିବ ଆଉ ଅଳ୍ପ ଦିନ ଗଲେ ତା' ଦୁଃଖ ଦୂର ହୋଇଯିବ ।

ବାଡ଼ି ପଛପାଖ ତେନ୍ତୁଳିଟା ପୁରୁଣା ହୋଇଗଲାଣି । ସେଇମିତି ପଡ଼ିଛି, ଧାନ କୁଟି କୁଟି କଙ୍କାଳ ତାର ନଇଁ ପଡ଼ିଛି ।

ତା'ର ଫଳ ଆଜି ।

× × × × ×

ଚଷମାକାଚଟା ମଇଳା ଧରିଲାଣି । ଆସ୍ତେ ପୋଛି ଦେଲି ତାକୁ । ଡିବିରି ଆଲୁଅରେ ଆଉ ଆଖିକୁ ଭଲ ଦିଶୁନାହିଁ । ଗଦା ଦେଇଛି ଚିଠି । କଣ ଲେଖିଛି ସେ ଟୋକାଟା ଠିକ୍ ଏ କଥାରେ ମା କୁ ନ ପଚାରିଲେ କିଛି କରେନି । ମା' ଯେମିତି ତାର ସବୁ କିଛି ।

ଡାକଘରୁ ଚିଠି ଆଣି ପଢ଼ଣାଘରର ଝିଅ ସକାଳୁ ଦେଇ ଗଲାଣି । ଚିଠିଟି ପଢ଼ିବାକୁ ସେ ଫୁରୁସତ୍ ପାଇନି । ଦିନସାରା କାମ କରି କରି ଥକି ପଡ଼ିଲାଣି । ନିଘୋଲା-ହେଲେ ପଢ଼ିବ ବୋଲି ସାଇତି ରଖିଛି ।

ଲଫାପା ଚିରିଲି ଧୀରେ ଧୀରେ । ଧଳା କାଗଜରେ କଳା କଳା ହୋଇ ବଡ଼ ବଡ଼ ଅକ୍ଷର କେଇଟା । ପିଲାଦିନେ ମାଇନର ସ୍କୁଲ ଯାଏ ପାଠ ପଢ଼ିଥିଲି ସେ ଗାଁ ସ୍କୁଲରେ । ସେତେବେଳେ ଝିଅ କେହି ପଢ଼ୁନଥିଲେ । ଗୋଟିଏ ଝିଅବୋଲି ସବୁ ସାର୍‌ମାନେ ତାକୁ ଆଦର କରୁଥିଲେ ।

ପାଠଗୁଡ଼ାକ ଭୁଲି ଗଲାଣି କେତେ । ସଦା, ଗଦା ଛୁଆ ଛୁଆ ଥିବାବେଳେ ପାଠ ପଢ଼ାଇ ଦେଉଥିଲି ।

ଚଠି ପଢ଼ିଲା । ସୁନ୍ଦର ସୁନ୍ଦର ଅକ୍ଷରରେ କେତେ କ'ଣ ଲେଖିଛୁ । ପଢ଼ିସାରି କାନ୍ଦିବାକୁ ମନ ହେଉଥିଲା ତାର; କିନ୍ତୁ ଅଜଣାତରେ ଆଖିରୁ ଲୁହ ଠପ୍ ଠପ୍ କରି ଖସି ପଡ଼ୁଥିଲା ଚଠିଟା ଉପରେ ।

ଗଦା ଲେଖିଛୁ, ସେ ତାର ବାହାଘର ଠିକ୍ କରିଛି କୋଉ ଜଣେ ବଡ଼ଲୋକ-ଘରେ । ଝିଅ କେତେ ବେଶି ପାଠ ପଢ଼ିଛି । ତାକୁ ସେ ବାହା ହେବ ବୋଲି ଦିନ ସ୍ଥିର କରି ସାରିଲାଣି । ତା ବାହାଘରରେ ଯିବାକୁ ସେ ଲେଖିଛୁ ବୋଉକୁ । ଯଦି ଘର ଗ୍ରୁଡ଼ି ନଯାଇ ପାରେ, ତେବେ ବାହାଘର ପରେ ସେ ଆସି ଦେଖା କରିଯିବ ।

ସଦା ମା' ପାଖି ଆଉ କିଛି କହିବାକୁ ନଥିଲା । ଭାଗବତରେ ସେ ପଢ଼ିଥିଲା ସବୁ ମାୟା, ସେହି ମାୟା ଭିତରେ ସେ ପଶିରୁଥିଲା । ତାର ଅନେକ କଥା ରୁହାକୁରୁହା ମନେ ପଡ଼ି ଯାଉଥିଲା । ଗାଁ ମଙ୍ଗଳାଙ୍କ ମନ୍ଦିର ବେଢ଼ାଟାକୁ ନୂଆ କରିବ, ପୁଅ ବାହା ହେବା ଦିନ ଜନ୍ତାଳ ଦେବ ବୋଲି ମନେ ମନେ ସ୍ଥିର କରି ସାରିଥିଲା ।

ପୁଅ ନିଜେ ବାହାଘର ଠିକ୍ କରି ସାରିଲାଣି ।

ଆଉ ଗ୍ଦରିଦିନ ଗଲେ ବାହାଘର ।

ବୋଉକୁ ଯିବାକୁ ଲେଖିଛୁ, ନଗଲେ ସେ ତା ବୋହୂକୁ ଧରି ଆସିବ, ବୁଲିଯିବ । ସଦାଟା କୁଆଡ଼େ ବାହାରକୁ ଯାଇଛୁ । ବାପ୍ୟାଟା, ତାର ଜଞ୍ଜାଳରେ ସବୁବେଳେ ବ୍ୟସ୍ତ ।

ସଦା ତା ବାବାଘର କଥା କହି ପାରୁନି ଏଯାଏ । ସେ ବାହା ହୋଇ ପଡ଼ିଲେ ତାର ଆଉ ଚନ୍ତା ରହନ୍ତା ନାହିଁ ।

ସବୁ ମାୟା, ଧେତ୍ କ'ଣ ସେ ଭାବୁଛୁ ।

ଆମ୍ବଗୁଡ଼ାକ ଗଛରେ ଲଦି ହୋଇଛୁ । ଯିଏ ପାରିଲା ସେ ନେଇ ପଳାଇଗଲା । ସକାଳୁ ଗ୍ରଠି ଦି'ପହର ଯାଏ, ଲୋକଉପାସରେ କାହିଁକି ପଡ଼ିରହି ଏଘରକୁ ସେ ଜଗିଛୁ ।

ଗଦାର ବାହାଘର ଆଉ ଗ୍ଦରିଦିନ ଗଲେ ।

ତାକୁ ଯିବାକୁ ଲେଖିଛୁ ।

କୋଉଁଥିରେ ଯିବ ସେ ? କେଉଠିକି ? କ'ଣ ପିନ୍ଧିବ ?

ଗ୍ରଣ୍ଡଟେ ବୋଲି ବଡ଼ ଘରେ ଯଦି ବାରି ଦେବେ ।

କାହା ଘରକୁ ସେ ଯିବ ? ଗଦା ବାହାଘରକୁ ଯିବ ସିଏ । ଗଦା କିଏ କି ତାର ? କୋଇଲି କୁହୁ କୁହୁ କରୁଛୁ ଆମ୍ବଡ଼ାଳରେ ।

ସଦା ମା' ବୋଲିଲା······"କୋଇଲି ଲୋ ! କେଶବ ଯେ ମଥୁରାକୁ ଗଲା । ଗଲା ପୁଣି ବାହୁଡ଼ି ନଇଲା······କୋଇଲି ଲୋ ।" କୋଇଲିଟା ଆମ୍ବଡ଼ାଳରୁ କୁହୁ କୁହୁ ଡାକ ଗ୍ଦଲିଥିଲା ।



# ଡୋରି

ଅନେକ ଦିନ ପରେ ଶୈଳବାଳାଙ୍କ ସହିତ ଦେଖା । ଚାକିରିରୁ ବିଦାୟ ନେବା ମୋର ପାଞ୍ଚବର୍ଷ ହୋଇଗଲାଣି । ରିଟାୟାର୍ଡ ଲାଇଫ୍‌ରେ ସବୁବେଳେ ଭୁବନେଶ୍ୱରରେ ରହିବାକୁ ଭଲ ଲାଗୁ ନଥିବାରୁ ମୁଁ ମଝିରେ ମଝିରେ ଗାଁରେ ଯାଇ ରହେ । ପୁଅମାନେ ବିଭିନ୍ନ ଜାଗାରେ ବୋହୂମାନଙ୍କୁ ଧରି । କେତେଦିନ ଏବେ ସଂସାର ଜଞ୍ଜାଳରେ ରହି ଲେଉଟ୍ ପାଉଟ୍ ହେଉଥିବ—ଏହିକଥାକୁ ଚନ୍ଦ୍ରାକରି ସମସ୍ତଙ୍କଠାରୁ ପୃଥକ କରି ପକାଇଛି ନିଜକୁ । ପତ୍ନୀଙ୍କର ଦେହାବସାନ ହେବା ଦୁଇବର୍ଷ ହୋଇଗଲାଣି । ସେ ଥିଲାବେଳେ ନାନା ଦୁଃଖ ସୁଖ ସତ୍ତ୍ୱେ ସଂସାର ଭିତରେ ହିଁ ରହିବାକୁ ହୋଇଥିଲା । ଏବେ ମୁଁ ମୁକ୍ତ । ସମ୍ପୂର୍ଣ୍ଣ ମୁକ୍ତ । ଚାକିରିର ଲୋଭ, ପାରିବାରିକ ସୁଖ ଶାନ୍ତି ଇତ୍ୟାଦି-ଠାରୁ ବହୁ ଦୂରରେ ରହି ସମୟ କଟାଇ ଚାଲିଛି ଈଶ୍ୱରଙ୍କ ନାମ ନେଇ । ଜୀବନସାରା ଅନେକ ପାପ କାର୍ଯ୍ୟର ବୋଝକୁ ମୁଣ୍ଡାଇ ଚାଲି ଚାଲି ଥକି ପଡ଼ିଥିଲି । ମନରେ କିନ୍ତୁ ସେଇଦିନଠୁ ପାଇଥିଲି ଅନେକ ଅବ୍ୟକ୍ତ ଆଶ୍ୱାସ, ଯେଉଁଦିନ ବଡ଼ପୁଅ ମୋ ଆଖି ଆଗରେ ପଚିଶ ବର୍ଷର ସମ୍ପର୍କ, ବନ୍ଧନକୁ ଚିତାରେ ଥୋଇ ଦେଇ ନିଆଁ ଲଗାଇ ଦେଲା । ଯେଉଁ ଦେହଟାକୁ ଦୀର୍ଘଦିନ ଧରି ଦେହରେ ଗୁଡ଼ାଇ ଦେଇଥିଲି, ତାକୁ ସେଇଠି ପୋଡ଼ି ପାଉଁଶରେ ଅଳ୍ପ ସମୟ ଭିତରେ ପରିଣତ ହୋଇଥିବାର ଦେଖିଥିଲି । ଜୀବନଟା ଏହିପରି, ଭାବିବାକୁ କେତେ ଅବା ସମୟ ମିଳିଥାନ୍ତା ମୋତେ ! ଦୁଇ ଅଧ୍ୟାୟ 'ଭାଗବତ' ପ୍ରତିଦିନ ଚଷମା ଫାଙ୍କବାଟେ ପଢ଼ିସାରି ଏକ ଲୟରେ ଗାଁର ସୀମାହୀନ ଆକାଶକୁ ଚାହିଁ ତାରାମାନଙ୍କ ମଝିରେ ଦିବ୍ୟ ସତ୍ତାକୁ ଉପଲବ୍ଧି କରିବାକୁ ଚେଷ୍ଟା କରୁଥିଲି ।

ରିଟାୟାର୍ଡ ପରେ ଏଇ ଥିଲା ମୋର ଜୀବନ । ଭୁଲି ଯାଇଥିଲି ସମସ୍ତଙ୍କୁ ଗୋଟି ଗୋଟି କରି । ସେଦିନ ଭୁବନେଶ୍ୱରରୁ ବସ୍‌ରେ ଫେରିବା ବେଳେ କଟକ ବସ୍ ଷ୍ଟାଣ୍ଡରେ ଓହ୍ଲାଇ କିଛି ଫଳ ମୂଳ କିଣିବି ବୋଲି ଫଳ ଦୋକାନରେ ଚାଲବୁଲ କରିବାବେଳେ ପଛରୁ କାହାର ଡାକରେ ଫେରି ଚାହିଁଥିଲି । ମୁଣ୍ଡରେ ଓଢ଼ଣାଟିକୁ ଟିକିଏ ଟାଣି ଦେଇ, ମୋର ଗୋଡ଼ ଛୁଇଁ ପ୍ରଣାମ ଜଣାଉଥିଲା ମଧ୍ୟବୟସ୍କା ସ୍ତ୍ରୀ ଲୋକଟିଏ । ଚିହ୍ନିପାରି ନଥିଲି ହଠାତ୍ । "ବଡ଼ ଭାଇ, ଚିହ୍ନି ପାରିଲେନି । ଅନେକ ଦିନ ପରେ ଦେଖା ତ, କେଉଁଠୁଆଉ ମନେ ଥିବ ।"

ତାର 'ବଡ଼ଭାଇ'ର ଡାକ ମୋତେ କେଉଁ ଦୂର ଅତୀତକୁ ନେଇ ଯାଇଥିଲା ଏବଂ ମୁଁ ତାକୁ ବାର ବାର କରି ସ୍ପର୍ଶ କରି ଉଠିଥିଲି—

"ତୁ ଶୈଳ ତ ବୁଢ଼ିଆ ।"

"ହଁ, ବଡ଼ଭାଇ, ମୁଁ ତୁମର ସେଇ ଶୈଳ, ବୁଢ଼ିଆ ।"

ବହୁଦିନ ପରେ ଦେଖା ହୋଇଥିବା ହେତୁ, ବସ୍‌ଟା ଛାଡ଼ିବାକୁ ଡେରି ଲାଗୁଥିବାରୁ ତାକୁ ସାଙ୍ଗରେ ଧରି ଗାଁକୁ ଫେରି ଆସିଥିଲି । ଅନେକ ଦିନ ପରେ ମୋତେ ଲାଗୁଥିଲା, ମୁଁ ଯେପରି ଏକ ନୂଆ ଜୀବନ ଫେରିପାଇଛି, ମୋର ଅତୀତର ବହୁ ସ୍ମୃତି ବିଜଡ଼ିତ ସ୍ୱପ୍ନର ଭିତରେ ଶୈଳ ଏକ କ୍ଷୀଣରେଖା ମାତ୍ର । କିନ୍ତୁ ସ୍ନେହ, ପ୍ରେମର ଶାଶ୍ୱତ ପ୍ରତୀକ ଏହି ଶୈଳ ଭିତରେ ମୁଁ ଦିନେ ପାଇଥିଲି, ଜୀବନର ପ୍ରତିଷ୍ଠିତ ସୌରଭକୁ ଅନୁଭବ କରିଥିଲି । ନିଜକୁ ହିଜାଇ ଦେଇ 'ବଡ଼ଭାଇ' ହେବାର ଗୌରବରେ ଆନନ୍ଦିତ ହୋଇଥିଲି ।

ଘର ସଂସାର ଭିତରେ ଆବଦ୍ଧ ରହି, ମୋର ନିଜର ଲୋକମାନେ ଯାହାଙ୍କୁ ମୁଁ ଆପଣାର ବୋଲି ଭାବିଥିଲି, ଯାହାଙ୍କ ପାଇଁ ମୋ ଆଖିର ଅଶ୍ରୁ ବନ୍ଦ ହୋଇ ଯାଇଥିଲା ସେଉଁମାନଙ୍କୁ ମଣିଷ କରିବାକୁ ମୁଁ ନଈ କୂଳର ଗୋଡ଼ିପଥର ପରି ପାଲଟି ଯାଇଥିଲି, ସେମାନେ ମୋତେ ସମସ୍ତେ କ୍ରମେ ଦୂରକୁ ଠେଲି ଦେଇଥିଲେ । ମୁଁ ନଈ କୂଳର କାଶତଣ୍ଡି ଫୁଲଭଳି କେବଳ ସମ୍ମୋହିତ ହୋଇ ପଡ଼ି ରହିଥିବା-ବେଳେ 'ବଡ଼ଭାଇ'ର ମଧୁର ସ୍ୱର ମୋ କାନରେ ଗୁଞ୍ଜରିତ ହୋଇଉଠିଥିଲା ଓ ମୁଁ ସେଥିରେ ଆମୋଦିତ ଓ ଆହ୍ଲାଦିତ ହୋଇଥିଲି ।

ଗାଁର ନିର୍ଜନ କୋଠରୀଟା ଭିତରେ ଆରାମ ଚେୟାରଟିକୁ ଟାଣି ଆଣି ବସି ପଡ଼ିଲି ଏବଂ ଚାହିଁ ରହିଥିଲି ତାରି ଆଡ଼େ ।

"ତୋର କେତେ ପରିବର୍ତ୍ତନ ହୋଇ ଯାଇଛିରେ ! ପ୍ରଥମେ ଦେଖି ଚିହ୍ନି ପାରିଲି ନାହିଁ । କେମିତି ଅଛୁ କହିଲୁ ଦେଖି ?"

ଆଖିରେ ଲୁହ ଟଳଟଳ କରି ସେ କହିଲା ତା ଜୀବନର ଏକ ଏକ ପର୍ଯ୍ୟାୟର କାହାଣୀ । ସେ କାହାଣୀ ଭିତରେ ଥିଲା ବର୍ଷ ବର୍ଷର ସଞ୍ଚିତ ଆଶା ନିରାଶାର ଅନେକ ଅକୁହା କଥା । ରୁଦ୍ଧ ଦ୍ୱାର ଭିତରେ ବନ୍ଦଥିବା କଥାଗୁଡ଼ାକ ବାହାରି ଆସୁଥିଲା ତାରି ପାଟି ଭିତରୁ ।

"ବଡ଼ଭାଇ ! କ'ଣ କହିବି । କେଉଁ କଥା କହିବି । ବାହାଘର ପରଦିନ ତୁମେ ମୋତେ କହିଥିଲ ନା—"ବୁଢ଼ିଆ, ଜୀବନ ଯନ୍ତ୍ରଣା ଭିତରେ, ବୋହୂମାନଙ୍କ

ସଙ୍ଗୀତର ଝଙ୍କାର ମଧ୍ୟରେ ତୁ ଯେପରି ଭୁଲି ନଯାଉ—ଏ ସଂସାର କ୍ଷଣସ୍ଥାୟୀ । ଏଠି ସବୁକିଛି ମାୟା । ତାରି ଭିତରେ ଆମେ ବଞ୍ଚିଛେ ନିଜ ନିଜର ସ୍ୱାର୍ଥକୁ ଆବୋରି । ତାରି ଭିତରେ ହସ କାନ୍ଦର ଭଙ୍ଗାରୁଜା ଘର କରିବାର ପ୍ରଚେଷ୍ଟା । ଆଗେଇ ଯିବାର ଅନେକ ଯତ୍ନ, ଅନେକ ସ୍ୱପ୍ନକୁ ସାକାର କରିବାର ବଳବତ୍ତର ଇଚ୍ଛା । ସେଇଠି ସ୍ନେହ, ମମତାର ରସସିକ୍ତ ଧାରହିଁ ଜୀବନକୁ କରେ ସୁଖମୟ ।"

"ତୁମର ସେଇ କେତୋଟିପଦ କଥା ମୋର ଏବେବି ଅଭୁଲା ହୋଇ ରହିଛି । ସେ ଦିନଗୁଡ଼ିକ ଥିଲା ସୁଖର ଦିନ, ଆନନ୍ଦର ଦିନ । ନୂଆ ଜୀବନକୁ ଉପଭୋଗ କରିବାର ମୁହୂର୍ତ୍ତ । ଦୁହେଁ ଦୁହିଙ୍କୁ ଏକ ଆତ୍ମାରେ, ଏକ ଶରୀରରେ ବାନ୍ଧି ଦେଇଥିଲୁ ଖରା, ବର୍ଷା, ଶୀତ, ବସନ୍ତର ସକାଳୁ ସନ୍ଧ୍ୟାଯାଏଁ ଆମେ କେବଳ ପରସ୍ପରକୁ ଦେଖୁଥିଲୁ, ପରସ୍ପର କଥା ଭାବୁଥିଲୁ । ଆକାଶରେ ମେଘମାନେ ବଉଦ ଉହାଡ଼ରେ ଲୁଚକାଳି ଖେଳିବା ପରି ଆମେ ଖେଳୁଥିଲୁ । କେବେ କେବେ ବର୍ଷା ପଡ଼ୁଥିଲୁ । ଭାବୁଥିଲୁ ବଞ୍ଚିବାରେ ବି ରହିଛି ଆନନ୍ଦ । କେଉଁଠୁ କିଏ ଉଡ଼ି ଆସି କାହା ବସାରେ ରହିଗଲୁ ତାହା ଆଦୌ ଜାଣି ପାରିଲୁ ନାହିଁ ।

ଏଇତ ଥିଲା ପ୍ରଥମ କେତେଦିନର ବୈଚିତ୍ର୍ୟମୟ ସଂସାର । ତୁମେତ ଦେଖିଛ ବଡ଼ଭାଇ, ତୁମରି ଆଖି ଆଗରେ ଆମେ ପରସ୍ପରକୁ ଜାବୋଡ଼ି ଧରିଥିଲୁ ଦୁଃଖ ଓ ସୁଖ ଭିତରେ । ସମସ୍ତ ସମୟରେ ସେଇ ଦିନଗୁଡ଼ିକ କଥା ମନେ ପଡ଼ିଯାଏ । ଆମ ହାତ ପାହାନ୍ତାରେ ନଥିବା ଦିନ ଗୁଡ଼ିକ କେମିତି ଆଉ ଫେରି ଆସିବ ଯେ !"

ଧୀରେ ଧୀରେ ଗୋଟି ଗୋଟି କରି ସେ କହୁଥିଲା ମୋତେ ତାର ଜୀବନ କାହାଣୀ । ମୁଁ ତା' ଆଗରେ ବେତ ଚୌକିଟିକୁ ଲମ୍ବାଇ ଦେଇ ବସି ରହିଥିଲି । ତାକୁ ଟିକିଏ ବିଶ୍ରାମ ନେବାକୁ କହିଲି ।

"ଚା' କପେ କରି ଆଣିବୁ କି ?"

ଉଠି ପଡ଼ିଲା ସେ ଚା' କରିବା ପାଇଁ ।

ମୁଁ ଚକିତ ମନରେ ବାହାର ଆକାଶକୁ ଲକ୍ଷ୍ୟ କଲି । କାହିଁକି ପରିବର୍ତ୍ତନ ଏ ଝିଅଟାର । ପ୍ରଥମେ ଯେଉଁଦିନ ତାକୁ ଦେଖିଥିଲି ସେଦିନ ସେ ଥିଲା ଚଞ୍ଚଳା ବରିଷ୍ଯ ହରିଣୀ । ଯାହାର ହାତ ଧରିବି ବୋଲି ସେ ଘରୁ ଗୋଡ଼ କାଢ଼ିଥିଲା, ତାକୁ ଆଦୌ ନଦେଖି, ଗୋଟାଏ ଦୁଃସାହସରେ ଚାଲି ଆସିଥିଲା ବହୁଦୂର । ପ୍ରେମର ନିବିଡ଼ ଶାଶ୍ୱତ ବନ୍ଧନ ଭିତରେ ବାନ୍ଧିହେବାର ମୋହ ତାର ରାସ୍ତା ରୋକି ପାରି ନଥିଲା । ତାର ଚାଲିପଥରେ କଣ୍ଟା ଫୁଲ ହୋଇ ବିଛି ପଡ଼ିଥିଲା । ଅବୁଝା ଅମରା ଜୀବନ ସଙ୍ଗୀଟି ତା'ର ତା'କୁ ପାଇଥିଲା, ସାଉଁଟି ନେଇଥିଲା ଆଦର କରି । ବସା ବାନ୍ଧିବାକୁ କୁଟା କାଠି ଏକାଠି କରିଥିଲା, ସେହି ଥିଲା ତା ସହିତ ପ୍ରଥମ ସାକ୍ଷାତ ।

ତା'ପରେ ଅନେକ ଦେଖାଶୁଣା ଭିତରେ କ୍ରମଶଃ ସେମାନଙ୍କଠାରୁ ଦୂରେଇ ଯାଇଥିଲି । ଜୀବନ ସଂଗ୍ରାମର ଚଲାପଥରେ ଚାଲିବା ପାଇଁ ପଥର ପଥରକୁ ଆଡ଼େଇ ଚାଲିବାବେଳେ ପଛକୁ ଚାହିଁବାର ଜ୍ ନଥିଲା ।

ଆଜି ଅନେକ ଦିନ ପରେ, ତା ସହିତ ଦେଖା ।

କ'ଣ ହୋଇପାରେ ତାର ସମସ୍ୟା ! ମନେ ମନେ ମୁଁ ଭାବୁଥିଲି ।

"ବଡ଼ଭାଇ, ଚା ।"

ତା ହାତରୁ ଚା' କପଟି ନେବାବେଳେ ତା ମୁହଁକୁ ଚାହିଁଦେଲି । ଆଖି ଦି'ଟାର ଚଞ୍ଚଳତା କିପ୍ରେଜ ପଡ଼ି ଯାଇଥିଲା । ତା ଭିତରେ ନଥିଲା ଏତେ ଟିକିଏ ବଞ୍ଚି ରହିବାର ଆଶା ବା ବିଶ୍ୱାସ । ଚା କପ ଥୋଇ ସେ ବସି ପଡ଼ିଲା ଓ ପୁଣି ଆରମ୍ଭ କଲା ତା' ଜୀବନର ଅକୁହା କଥା ।

"ସେଇ ଦିନଗୁଡ଼ିକର ଆନନ୍ଦ ଅଳ୍ପଦିନ ଭିତରେ ସରି ଆସିଲା । ତୁମର ସଂସ୍ପର୍ଶରେ ଓ ସଙ୍ଗରେ ଜୀବନର ଯେଉଁ ମୂଲ୍ୟବୋଧକୁ ସେ ପାଇଥିଲେ, ତୁମଠାରୁ ଦୂରେଇ ଯାଇ ସେ ନିଜକୁ ହଜାଇ ଦେଲେ କେଉଁଠି କେଜାଣି, ଯେଉଁଠାରେ ମୂଲ୍ୟବୋଧ ଥିଲା ମୂଲ୍ୟହୀନ ।"

ଆଖିରେ ଆଖିଏ ଲୁହ ଟଳମଳ କରୁଥିଲା । କହିବା ବେଳେ କୋହ ସମ୍ଭାଳି ପାରୁ ନଥିଲା ।

"ଦିନ ଗୁଡ଼ିକ ମାସ, ବର୍ଷରେ ଆଗେଇ ଗଲା···ସୋପାନ ପରେ ସୋପାନ ଚଢ଼ିବାକୁ ଲାଗିଲେ ସେ । ମୁଁ ତାଙ୍କ ସନ୍ତାନଟିକୁ କାଖରେ ଜାକିଧରି ଏ ସହରରୁ ସେ ସହର ତାଙ୍କ ସହିତ ତାଲ ଦେଇ ଦୌଡ଼ୁଥିଲି । ତାଙ୍କ ଆଗରେ ଥିଲା ସୋପାନ ଚଢ଼ିବାର ମୋହ ଅର୍ଥର ମୋହ । ମୁଁ ଓ ଶିଶୁ ସନ୍ତାନଟି ତାଙ୍କ ନିକଟରେ ତୁଚ୍ଛ ଓ ଗୌଣ ହୋଇ ଯାଇଥିଲୁ । ଘର ଭିତରେ ଧୂପର ସୁଗନ୍ଧିତ ସୁବାସ ପରିବର୍ତ୍ତେ ଦାମୀ ଦାମୀ ବିଦେଶୀ ପାନୀୟର ତୀବ୍ରତା ଦିନକୁ ଦିନ ବୃଦ୍ଧି ପାଉଥିଲା । ସକାଳୁ ସନ୍ଧ୍ୟାଯାଏ ସିଗାରେଟ୍‌ର ଧୂମ୍ରକୁଣ୍ଡଳୀରେ ମୁକ୍ତ ପବନ ସଂକ୍ରମିତ ହୋଇ ଯାଉଥିଲା ।

ତାରି ଭିତରେ ମୋତେ ବଞ୍ଚିବାକୁ ହେଉଥିଲା । ସନ୍ତାନଟିକୁ କ୍ରମଶଃ ମଣିଷ କରିବାର ଇଚ୍ଛା ନେଇ ।

ତଥାପି କିଛି ଦୁଃଖ ନଥିଲା, ଅବଶୋଷ ନଥିଲା । ଶିଶୁ ସନ୍ତାନଟିକୁ ସ୍ନେହରେ ଯାବୋଡ଼ି ଧରିବାବେଳେ ସବୁ ଦୁଃଖ ଭୁଲି ହୋଇ ଯାଉଥିଲା । ମା' ମନରେ ଅନେକ ଆଶା ପରି ମୋ ମନରେ କେତେ ଆଶା ବସା ବାନ୍ଧିଥିଲା । ଏହି ପିଲାଟି ତାଙ୍କ ରକ୍ତ ମାଂସର ଅନ୍ୟ ଏକ ଦେହ । ତାକୁ ମଣିଷ କରିବାକୁ ହେବ । ତାରି ହସକାନ୍ଦ ଭିତରେ ନିଜକୁ ଖୋଜିବାକୁ ହେବ । ପିଲାଟିର ମୁହଁକୁ ଚାହିଁ ଭୁଲି ଯାଉଥିଲି ତାଙ୍କର

ଅକଥନୀୟ ଯନ୍ତ୍ରଣା । କିନ୍ତୁ ପଦେ କହିବାର ମୁଁ ନଥିଲି ମୋର । କହିଥିଲେ କିଏ ବା ଶୁଣିଥାନ୍ତା, ସେ ତ ଆଉ ମଣିଷ ଅବସ୍ଥାରେ ନଥିଲେ । ତାଙ୍କ ପାଖରେ ମୋର ସବୁକଥା ଥିଲା ମୂଲ୍ୟହୀନ । ମୋ ନିଜର କୌଣସି ଅସ୍ତିତ୍ୱ ନଥିଲା । ଜାଣି ଜାଣି ମୁଁ ତାଙ୍କ ପାଖରେ ମୋର ନିଜତ୍ୱ ସମ୍ପୂର୍ଣ୍ଣ ଅଜାଡ଼ି ଦେଇଥିଲି । କୋଳକୁ ପୂର୍ଣ୍ଣକରି ଆସିଥିବା ସନ୍ତାନ ସେ ଶୂନ୍ୟତା ତାକୁ କିନ୍ତୁ ପୂରଣ କଲା ମାତ୍ର ମାନସିକ ଯନ୍ତ୍ରଣା ବଢ଼ି ଚାଲିଲା ଦିନକୁ ଦିନ । ଏହିପରି ଚାଲିଥିଲେ ମୋର କିଛି କରିବାର ବା କହିବାର ନଥିଲା ମାତ୍ର କ୍ରମାଗତ ଭାବରେ ତାଙ୍କର ମୋ ଉପରେ ଓ ଶିଶୁ ସନ୍ତାନଟି ଉପରେ ଅକଳନୀୟ ଅତ୍ୟାଚାର ମୋ ସହନଶୀଳତାର ସୀମାକୁ ଟପି ଯାଇଥିଲା ।

ଲୁହ ଛଳ ଛଳ ହେଉଥିଲା ତା ଆଖିରେ । ଠପ୍ ଠପ୍ କରି ଖସିବାର ଉପକ୍ରମ । ମୁଁ ତାକୁ ଖାଇବା ପାଇଁ ବ୍ୟବସ୍ଥା କରିବାକୁ କହି ଛାତ ଉପରକୁ ଉଠିଗଲି । × × ×

ମୋର ମନେ ପଡ଼ିଗଲା ସେହି ପ୍ରଥମ କେଇଦିନ କଥା । ତାକୁ ଗ୍ରେଷେଇ କରି ଆସୁ ନଥିଲା ସେତେବେଳେ । କେବେକେବେ ଭାତ ଲାଗି ଯାଉଥିଲା ତ କେତେବେଳେ ତରକାରୀ ଲୁଣିଆ କମ୍ବା ଅଲଣା ହୋଇ ଯାଉଥିଲା । କଥା କହିଲେ ଲାଜେଇ ଯାଉଥିଲା । ଧୀରେ ଧୀରେ କହୁଥିଲା, "ବଡ଼ଭାଇ, ମୁଁ କିନ୍ତୁ ମନେ ମନେ ପ୍ରେମ କରିବାଟା ଶିଖିଛୁ, ମୋତେ କିନ୍ତୁ ରୋଷେଇ ଆସେନି । ଶିଖାଇବା ପାଇଁ ବର୍ତ୍ତମାନ ଏ ଘର ମୋର ମାଷ୍ଟର ।"

ସମ୍ମିଳିତ ହାସ୍ୟରୋଳ ବେଶ୍ ଆମୋଦ ଦେଉଥିଲା । ଟେବୁଲ ଉପରେ ସେ ବାଢ଼ି ଦେଇଥିଲା ରୁଟି, ତରକାରୀ ଓ ଅନ୍ୟାନ୍ୟ ଖାଦ୍ୟ ପଦାର୍ଥ । ବହୁଦିନ ହେଲା ସୁସ୍ୱାଦୁ ରୋଷେଇରେ ପାଟି ଅରୁଚ ଧରିଥିଲା । ଖାଇବାରେ ଆଗ୍ରହ ସୃଷ୍ଟି ହେଉ ନଥିଲା ।

ଆସ୍ତେ ଆସ୍ତେ ଖାଇବାବେଳେ ମୁଁ ତାକୁ ବସିବାକୁ କହି ଜୀବନର ଅବଶିଷ୍ଟ ଘଟଣା ଶୁଣିବାର ଆଗ୍ରହ ଦେଖାଇଲି । ସେ ଚୌକି ଉପରେ ବସିଯାଇ ପୁଣି ଧୀରେ ଧୀରେ ଆରମ୍ଭ କଲା—"ସେଦିନ ଥିଲା ପ୍ରଚଣ୍ଡ ବର୍ଷା ରାତି । ସେତେବେଳକୁ ବାରଟା ବାଜିବା ଉପରେ । ସେ ଘରକୁ ଫେରି ନଥିଲେ । ପୁଅଟିକୁ ଶୋଇ ପକେଇ, ମୁଁ ଚାହିଁ ରହିଥିଲି ତାଙ୍କରି ବାଟକୁ । ସେଦିନ ଥିଲା ଆମ ବିବାହ ତିଥି । ମନେ ମନେ କେତେ କଳ୍ପନା କରୁଥିଲି, ସେ ଫେରିବେ । ମୁଁ ତାଙ୍କୁ ଆଶ୍ଚର୍ଯ୍ୟ କରିଦେବି ଏହି ଦିନଟାକୁ ମନେ ପକେଇ ଏବଂ ବର୍ଷା ରାତିରେ ବସି ବସି, ଆମେ ଗପ କରିବୁ ଅତୀତ ଦିନର । ମାତ୍ର ମୋର ମନକଥା ମନରେ ରହିଗଲା । ବାରଟା ବେଳେ ହଠାତ୍ ଗାଡ଼ି ଆଲୁଅ ଆସି ଝରକା ଉପରେ ପଡ଼ିଲା । ସେ ଗାଡ଼ିରୁ ଓହ୍ଲାଇଲେ । ସାଙ୍ଗରେ ଥିଲା ଜଣେ ସୁନ୍ଦରୀ ତରୁଣୀ । ମୁଁ ଅବାକ୍ ଓ ବିସ୍ମିତ ଭାବରେ ଚାହିଁ ରହିଥିଲି । ଦ୍ୱାରରେ

କାଳ୍‌ବୈଶାଖୀ ପ୍ରବଳ ବେଗରେ ବହି ଯାଉଥିଲା । ତଳକୁ ଓହ୍ଲାଇ ଯାଇ ଦ୍ୱାର ଖୋଲି-ବାକୁ ମୋର ସାହସ ହେଉ ନଥିଲା । ଧୀରେ ଧୀରେ ମୁଁ ଆଗେଇ ଯାଇ ଖୋଲିଦେଲି କବାଟଟିକୁ । ସେ ପଶି ଆସିଲେ ଭିତରକୁ । କୌଣସି କଥା ନାହିଁ, ତାଙ୍କର ହାତ ହଠାତ୍ ମୋ ଗାଲ ଉପରକୁ ମାଡ଼ିଗଲା ଏବଂ ଶକ୍ତ ଚଟକଣିଟା ପାଇ ମୁଁ ଗଡ଼ିଗଲି ତଳେ । କାଚ ଚୁଡ଼ିଗୁଡ଼ାକ ତଳେ ବାଜି ଚୂନା ହୋଇ ହାତଟା ରକ୍ତାକ୍ତ ହୋଇଗଲା । ସେ ଗୋଇଠାଏ ମାରି ଆଗକୁ ମାଡ଼ି ଚାଲିଲେ । ପାଟିରେ ଅଜସ୍ର ଅଶ୍ରାବ୍ୟ ଭାଷା ।

ବହୁତ ସମୟ ପରେ ଧୀରେ ଧୀରେ ମୁଁ ଉଠି ଉପରକୁ ଆସିଲି ସତ, ମାତ୍ର ଦ୍ୱାର ମୁହଁରେ ପହଞ୍ଚି ଅଟକି ଗଲି । ସେ ମୋରି ବିଛଣା ଉପରେ ସେହି ଯୁବତୀଟି ସହିତ ।"

ଖାଇବା ମୋର ଅଧାରୁହିଁ ଉଠି ପଡ଼ିଲି ମୁଁ । ତାକୁ ସାନ୍ତ୍ୱନା ଦେଇ ଖାଇବାକୁ ଅନୁରୋଧ କଲି । ସେ କିନ୍ତୁ ନଖାଇ ଶୋଇ ପଡ଼ିଲା ।

× × ×

"ଜୀବନରେ ଶେଷକୁ ଏଇଆ ଦେଖିବାକୁ ଓ ଭୋଗିବାକୁ ଥିଲା ସବୁ ପୁଅକୁ ସାଙ୍ଗରେ ଧରି, ସେ ନଥିବାବେଳେ ଘରୁ ଗୋଡ଼ କାଢ଼ି ଚାଲି ଆସିଲି । ପୁଅକୁ ହଷ୍ଟେଲରେ ରଖି ତାର ପଢ଼ିବାର ବ୍ୟବସ୍ଥା କରିଦେଲି । ମୁଁ ଜୀବନ ସହିତ ଲଢ଼ିବା ପାଇଁ ତୁମଠାରୁ ଯେଉଁ ଶକ୍ତି ଓ ପ୍ରେରଣା ପାଇଥିଲି, ତାକୁ କାର୍ଯ୍ୟରେ ଲଗାଇବା ପାଇଁ ଗୋଟିଏ ପ୍ରାଇମେରୀ ବିଦ୍ୟାଳୟରେ ଶିକ୍ଷକତା କରୁଛି । ଗ୍ରୀଷ୍ମ ଛୁଟି ହେଉ କଟକ ଆସିଥିଲି, ପୁଅକୁ ଦେଖିଯିବାକୁ, ତୁମ ସହିତ ଭେଟ ହୋଇଗଲା ।"

ଏହି ଥିଲା ତାର ବକ୍ତବ୍ୟ । ନିଗ୍ରହ ଗାଁ ଝିଅଟି ଜୀବନର ମୂଲ୍ୟବୋଧକୁ ଦଳି ଚକଟି ଫିଙ୍ଗି ଦେବାକୁ ଇଚ୍ଛା କଲା ନାହିଁ । ସେ ସମାଜ ସହିତ ଲଢ଼ିବାକୁ ଝାମ୍ପ ଦେଲା ।

ମୁଁ ସେ କରୁଣ କାହାଣୀ ଶୁଣିବାବେଳେ, ତା'ର ସାହସିକତା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଉଥିଲି ।

ପରିଣତ ବୟସରେ ମୋର ବୋଉ କଥା ମନେ ପଡ଼ି ଯାଉଥିଲା । ଯେଉଁ ଘରଟି ଉପରେ ରାତି ଦିନ ବସି ମୋ ଜୀବନର ଶେଷ ସମୟଟିକୁ କଟାଉଥିଲି, ତାହା ଥିଲା ମୋର ବୋଉର ହାତ ଗଢ଼ା । ଜୀବନର ପ୍ରାରମ୍ଭରେ ବୈଧବ୍ୟକୁ ସାଥି ଭାବରେ ନେଇ କେତେ ସଂଗ୍ରାମ ସେ କରିଥିଲା ମୋତେ ମଣିଷ କରିବା ପାଇଁ, ମୁଁ ତା ଦୁଃଖକୁ ଦେଖି ଦେଖି ମୋର ହୃଦୟକୁ ଶକ୍ତ କରିଥିଲି । ଆଜି ଶୈଳ କଥା ଶୁଣିବାବେଳେ ମୋ ବୋଉର ସେହି କରୁଣ ମୂର୍ତ୍ତିଟି ଭାସି ଆସୁଥିଲା ।

ମୋ ଜୀବନରେ ଏହି କରୁଣତାର ଶେଷ କ'ଣ ନାହିଁ ।

ମୁଁ କ'ଣ ବା କରି ପାରିବି ଏହି ଝିଅଟି ପାଇଁ ଯେ ମୋତେ ଅତି ଆପଣାର ଭାବେ, ବଡ଼ଭାଇ ଭାବରେ ହୃଦୟରେ ଦୀର୍ଘଦିନ ଧରି ନମସ୍କାର କରି ଚାଲିଛି । ସମାଜ

ବିରୁଦ୍ଧରେ ବିଦ୍ରୋହ କରି ପାରିବାର ଶକ୍ତି କ'ଣ ମୋଠାରେ ଅଛି ? ଏବେ ମୁଁ ଜାଣିଛି—ଈଶ୍ୱରଙ୍କର ଏକ କ୍ରୀଡ଼ନକ ମାତ୍ର । ତଥାପି ବଞ୍ଚିଥିବା ଯାଏ, ମୋତେ ଏ ସଂଗ୍ରାମ ଯୁଝିବାକୁ ହେବ । ଭାରତୀୟ ସଂସ୍କୃତିରେ ଲାଗି ଆସୁଥିବା ଏ ଘୁଣକୁ ଛଡ଼ାଇବା ଦରକାର—କେଉଁମାନଙ୍କୁ ଆହ୍ୱାନ କରିବି ଏଥିପାଇଁ ?

× × ×

ଶୈଳ ଦିନେ ଦୁଇଦିନ ମୋ ପାଖରେ ରହି ତାର କାର୍ଯ୍ୟସ୍ଥଳୀକୁ ଚାଲିଗଲା । ମୋ ପାଖରେ ଛାଡ଼ି ଯାଇଥିଲା ତାର ଠିକଣାଟିକୁ ଗଲାବେଳେ ତାର ଓ ତା ପୁଅର ଫଟୋଟିଏ ମୋତେ ଦେଇ ଯାଇଥିଲା ଏବଂ ଅନୁରୋଧ କରିଥିଲା ଯଦି କେବେ ସୁବିଧା ମିଳେ ତା ଆଡ଼େ ଯିବାକୁ ।

ସମୟ ତାର ରଥଚକ୍ରକୁ ଗଡ଼େଇ ଚାଲିଥିଲା । ଭାଗବତ ଅଧ୍ୟାୟ ଭିତରେ ଜଗତ୍କାର ବ୍ରହ୍ମଙ୍କ ସାନିଧ୍ୟ ଲଭିବା ବ୍ୟାକୁଳିତ ହୋଇ ଉଠୁଥିଲା ମନ । ହଠାତ୍ ଦିନେ ଅନ୍ୟ ମନସ୍କ ଭାବରେ ବହିଟିଏ ଖୋଜୁ ଖୋଜୁ ତାର ଫଟୋ ସହିତ ଠିକଣାଟି ମୋର ହସ୍ତଗତ ହେଲା । ଅନ୍ୟମନସ୍କ ହୋଇ ପଡ଼ିଲି ମୁଁ । ଏତେଦିନ ଗଲାପରେ ମୁଁ ତା ପାଖକୁ ଯାଇ ପାରି ନ ଥିଲି କିମ୍ବା କିଛି ଲେଖି ନଥିଲି । ବ୍ୟାଙ୍କରେ ଥିବା କିଛି ଟଙ୍କା ଉଠାଇ ତା ନାମରେ ଡ୍ରାଫ୍ଟଟିଏ କରି ଲଫାପାରେ ଚିଠିଟିଏ ଲେଖିଲି । ସେ ଚିଠିରେ ଜୀବନ ସଂଗ୍ରାମରେ ଯୁଝୁଥିବା ଶୈଳକୁ ବଞ୍ଚିବା ପାଇଁ କିଛିଟା ସାହସ ଯୋଗାଇବା ପାଇଁ ଏ ଅର୍ଥକୁ ପଠାଇଲି ବୋଲି ଲେଖିଦେଇ ତାରି ଠିକଣାରେ ପଠାଇଦେଲି । କିଛିଦିନ ପରେ ମୋର ସେହି ଚିଠିଟି ଫେରି ଆସିଥିଲା । ତା ଉପରେ ନାଲି କାଳିରେ ଲେଖା ହୋଇଥିଲା କେତେଟି ଧାଡ଼ି ।

"ଶ୍ରୀମତୀ ଶୈଳବାଳା ଦେବୀ ଗତ କିଛିଦିନ ହେଲା ଦେହତ୍ୟାଗ କରିଛନ୍ତି । ସେ କ୍ରମାଗତ ଭାବରେ ଅତ୍ୟଧିକ ପରିଶ୍ରମ କରି ଅସୁସ୍ଥ ହୋଇ ଶଯ୍ୟାଶାୟୀ ହୋଇ ପଡ଼ିଥିଲେ ।"

ଚିଠିଟିକୁ ଖୋଲିବାର ଆଗ୍ରହ ମୋର କମି ଯାଇଥିଲା । ନିର୍ବାକ ଭାବରେ ଚାହିଁ ରହି ମନଟାକୁ ଫେରାଇ ଆଣିବାକୁ ଚେଷ୍ଟା କରୁଥିଲି ନିଜର ଅସ୍ତିତ୍ୱ ମଧ୍ୟକୁ । ସେ ଦିନର 'ସମ୍ବାଦ' ପୃଷ୍ଠା ଓଲଟାଇ ପଢ଼ିବାବେଳେ ଆଖିରେ ପଡ଼ିଲା ମାଟ୍ରିକ ପରୀକ୍ଷାରେ ପ୍ରଥମ ହୋଇ ପାଶ୍ କରିଥିବା ଛାତ୍ରର ଫଟୋଟି ଉପରେ । ତା ତଳେ ଲେଖାଥିଲା, "ଶ୍ରୀମାନ୍ ସୁଦୀପ୍ତ କୁମାର ତାଙ୍କ ମାଆ ଶ୍ରୀମତୀ ଶୈଳବାଳା ଦେବୀଙ୍କର ପ୍ରେରଣା ଫଳରେ ପରୀକ୍ଷାରେ ଯଶସ୍ୱୀ ହୋଇ ପାରିଛନ୍ତି ।" ଅବୁଝା ବେଦନାରେ ଫାଟି ପଡ଼ୁଥିବା ମୋର ହୃଦୟ ଆନନ୍ଦ ଗଦ୍ ଗଦ୍ ହୋଇ ଉଠିଲା ଅହେତୁକଭାବେ । ମୁଁ ତତ୍କ୍ଷଣାତ୍ ସୁଦୀପ୍ତକୁ ଦେଖା କରିବା ପାଇଁ କଟକ ଅଭିମୁଖେ ଯାତ୍ରା କଲି ।



# କୀଟଦ୍ରଂଷ୍ଟ

କରମଣ୍ଡଳ ଏକସ୍‌ପ୍ରେସ୍ ଦ୍ରୁତଗତିରେ ଚାଲିଥିଲା । ବାହାରେ ହେଉଥିଲା ଭୀଷଣ ବର୍ଷା । ଦ୍ୱିତୀୟ ଶ୍ରେଣୀର କମ୍ପାର୍ଟମେଣ୍ଟର ସାଇଡ଼ବର୍ଥରେ ଶୋଇ ରହିଥିଲେ ତରୁଣ ଟ୍ରେନଂ ଇଉନିୟନ ନେତା ସର୍ବାନନ୍ଦ । ଆଖିକୁ ଆଦୌ ନିଦ ଆସୁନଥିଲା । ଟ୍ରେନ୍ ଜର୍ଣ୍ଣି କରି କରି ଦେହ ଅବଶ ହୋଇ ପଡ଼ିଥିଲା । ଦୀର୍ଘ କୋଡ଼ିଏ ଘଣ୍ଟାର ଯାତ୍ରା । ମାଡ୍ରାସଠାରୁ ପୁଣି ବାଙ୍ଗାଲୋର ଯିବାକୁ ହେବ, ସର୍ବଭାରତୀୟ ଟ୍ରେଡ୍ ଇଉନିୟନ୍ କର୍ମଗୋଷ୍ଠୀ ସମ୍ମିଳନୀରେ ଯୋଗଦେବାକୁ । ଗଲା ମାସକ ସାରା କେବଳ ସମ୍ମିଳନୀରେ ଯୋଗଦେଇ ସେ ବିରକ୍ତ ହୋଇ ଗଲେଣି । ମାତ୍ର କଣ ବା କରିଯାଇ-ପାରେ । କର୍ତ୍ତବ୍ୟର ଆହ୍ୱାନ । ଟ୍ରେଡ୍ ଇଉନିୟନ୍‌କୁ ଜୀବନର ଏକ ଯାତ୍ରା ଭାବରେ ଗ୍ରହଣ କରିଛନ୍ତି ।

ଗତକାଲିର କଥା ତାଙ୍କର ମନେ ପଡ଼ିଲା । ଆସିଲାବେଳେ ସାନ ପୁଅଟାର ଦେହ ଖରାପ ଥିଲା । ୧୦୩ ଡିଗ୍ରୀ ଟେମ୍ପରେଚରରେ ସେ ସମସ୍ତ ସମୟରେ ବାଉଳା ବାଉଳି ହୋଇ ପଡୁଥିଲା । ପତ୍ନୀଙ୍କର ମୁହଁକୁ ଚାହିଁ ପାରୁ ନଥିଲେ ସେ । ବିବାହିତ ଜୀବନର ଅନେକ ଦିନ ଗତ ହେଲେ ବି ତାଙ୍କ ପାଇଁ ବିଶେଷ କିଛି କରି ନଥିଲେ । ସକାଳୁ ସନ୍ଧ୍ୟାଯାଏ ବାହାରେ ବାହାରେ ତାଙ୍କର କଟୁଥିଲା । ଘରକୁ ଫେରିବା ମାତ୍ରେ କେତେନା କେତେ ଲୋକ ଆସୁଥିଲେ ଆଲୋଚନା କରିବା ପାଇଁ । କାହାର କେତେ ଅଭିଯୋଗ । ଟ୍ରାନ୍‌ସଫର, କିଏ ପ୍ରମୋସନ୍ ପାଉନି । ଲମ୍ବା ଲମ୍ବା ଫର୍ଦ୍ଦ ଚିଠିରେ କେତେବେଳେ କିଏ ରାଗି କରି ଚିଠି ଲେଖୁଥିଲା । ଯେପରି ସବୁ ଦୋଷ ତାଙ୍କର । କେହି ଟ୍ରେଡ୍ ଇଉନିୟନ୍‌ର ଆଦର୍ଶକୁ ବୁଝିବାକୁ ଚେଷ୍ଟା କରୁ ନଥିଲେ । ସର୍ବାନନ୍ଦ ଅନେକ କଥା ଟ୍ରେନ୍ କମ୍ପାର୍ଟମେଣ୍ଟ ଭିତରେ ଭାବୁଥିଲେ । ତାଙ୍କ ସହିତ ଆହୁରି ଅନେକ ଆସିଛନ୍ତି ସମ୍ମିଳନୀରେ ଯୋଗ ଦେବାକୁ । ସେମାନେ ବିଭିନ୍ନ ସ୍ଥାନରେ କାର୍ଯ୍ୟ କରୁଥିବା ତାଙ୍କର କମ୍ରେଡ୍ । ଚାକିରି ଜୀବନରେ ଯୋଗ ଦେବାଠାରୁ ଏ ପର୍ଯ୍ୟନ୍ତ ଦୀର୍ଘ ୧୫ ବର୍ଷକାଳ ଶ୍ରମିକ ଆନ୍ଦୋଳନରେ ଭାଗ ନେଇଛନ୍ତି । ରାଜଧାନୀର ଅନେକ ଛୋଟବଡ଼ ସଭାସମିତିରେ ଭାଷଣ ଦେଇଛନ୍ତି, ଆନ୍ଦୋଳନର ପୁରୋଧା ଭାବରେ ନେତୃତ୍ୱ ଦେଇଛନ୍ତି । କେତେକ ସମ୍ମାନ କଲାବେଳେ ଅନ୍ୟ କେତେକ ତାଙ୍କର ନିନ୍ଦା

କରିଛନ୍ତି । ସେଥିପ୍ରତି ସେ କେବେହେଲେ ଭ୍ରୂକ୍ଷେପ କରିନାହାନ୍ତି ମାତ୍ର ଏଥରକର ସାଥୀମାନଙ୍କର ବ୍ୟବହାରରେ ଅତିଷ୍ଠ ହୋଇ ପଡ଼ିଛନ୍ତି ସେ । ନିଜ ନିଜର ସାମୟିକ ସ୍ୱାର୍ଥପାଇଁ । ଟ୍ରେଡ୍ ୟୁନିୟନ୍‌ର ଚରମ ତ୍ୟାଗକୁ ସେମାନେ ଭୁଲି ଯାଇଛନ୍ତି । ଗତ କିଛି ଦିନର ଘଟିଥିବା ଘଟଣାଗୁଡ଼ିକୁ ସେ ମନ ଭିତରେ ଦୋହରାଉଥିଲେ ।

ଅଲ୍ପଦିନ ତଳର ଆନ୍ଦୋଳନର କଥା । କୌଣସି ଏକ ଶାଖାରେ ଏକ ଅପ୍ରୀତିକର ଘଟଣା ଘଟିଥିଲା । ତାର ସମ୍ମାନଜନକ ସମାଧାନ ହେବା ପରିବର୍ତ୍ତିରେ ମ୍ୟାନେଜମେଣ୍ଟ ମୁକାବିଲାର ମନବୃତ୍ତି ନେଇଥିଲେ । ନିଜର ବଡ଼ପଣକୁ ଜାହିର କରିବାକୁ ଚେଷ୍ଟା କରିଥିଲେ । ଯେଉଁମାନଙ୍କର ଅନୁଷ୍ଠାନ ପ୍ରତି ଆଦୌ ଦରଦ ନାହିଁ, ସେମାନେ ଉପରିସ୍ଥ କର୍ମକର୍ତ୍ତାଙ୍କୁ ପ୍ରଭାବିତ କରି ପାରିଥିଲେ । ଫଳରେ ତାଙ୍କ ନିକଟରେ ଅନ୍ୟ କିଛି ରାସ୍ତା ନଥିଲା ଆନ୍ଦୋଳନ କରିବା ବ୍ୟତୀତ । ଶ୍ରମିକର ଶେଷ ଅସ୍ତ୍ରହିଁ ସଂଗ୍ରାମ ଓ ସେ ସେହି ଅସ୍ତ୍ରକୁ ପ୍ରୟୋଗ କରିଥିଲେ । ସ୍ଲୋଗାନ ଦେଇ ଘେରାଉ କରିଥିଲେ ଶାନ୍ତିପୂର୍ଣ୍ଣ ଭାବରେ ସେ ତାଙ୍କର ଉପରିସ୍ଥ କର୍ମଚାରୀଙ୍କୁ । ପୁଲିସ୍ ଆସି ଯଥେଚ୍ଛାଚାର ବ୍ୟବହାର କରିଥିଲା । ମ୍ୟାନେଜମେଣ୍ଟର ଜାଲ୍‌ରେ ପଶିବା ପୂର୍ବରୁ ଖସି ଆସିବାକୁ ଚେଷ୍ଟା କରିଥିଲେ ସେ । କମ୍ରେଡ଼ମାନେ କେତେ କଏ କଣ କହିବାକୁ ଲାଗିଗଲେ । ବୁଝିବାକୁ ଚେଷ୍ଟା କରୁ ନଥିଲେ ଗୁରୁତ୍ୱ କେଉଁଠି । କେହି କେହି କମ୍ରେଡ଼ଙ୍କର ବନ୍ଧୁତ୍ୱ ମ୍ୟାନେଜମେଣ୍ଟର ଶତ୍ରୁମାନଙ୍କ ସହିତ ନିବିଡ଼ତମ ହୋଇ ପଡ଼ିଥିଲା । ସେ ଏଥିପ୍ରତି ଆଦୌ ଖିଆଲ ଦେଇ ନଥିଲେ । ପଶାକାଠିରେ ଖେଳ ଭିତରେ ପଶିବାକୁ ସମୟ ପାଇ ନଥିଲେ ।

ସେଦିନ ରାତିରେ ତାଙ୍କୁ ଆଦୌ ନିଦ ଆସି ନଥିଲା । ଆନ୍ଦୋଳନ କଲା-ବେଳେ କେଉଁଠି ଯଦି କିଛିଏ ଭୁଲତ୍ରୁଟି ରହିଯାଏ । ତେବେ ତାହା ସଫଳ ହେବନାହିଁ । ଏକଥା ଭଲରୂପେ ଜଣାଥିଲା ତାଙ୍କୁ କିନ୍ତୁ ସେ କେତେକ ଅସ୍ୱାଭାବିକ ପରିସ୍ଥିତି ପ୍ରତି ସଚେତନ ନଥିଲେ । ସେ ଜାଣିଥିଲେ ପ୍ରତ୍ୟେକ ବିଫଳତା ମୂଳରେ ସଫଳତାର ଚାବିକାଠି ମଧ୍ୟ ରହିଛି । କିନ୍ତୁ ଯେଉଁମାନଙ୍କ ପାଇଁ ସେ ଲଢ଼ୁଥିଲେ ସେହି ସାଥୀମାନେ କ୍ରମଶଃ ଅତି ମାତ୍ରାରେ ସ୍ୱାର୍ଥପର ହୋଇ ପଡ଼ୁଥିଲେ । ନିଜ ନିଜର ସ୍ୱାର୍ଥକୁ ରଖି ସମୂହ ସ୍ୱାର୍ଥକୁ ବଳି ଚଢ଼ାଉଥିଲେ ଏବଂ ସେହି ବଳି ଦେବାବେଳେ ସର୍ବାନନ୍ଦ ହୋଇ ପଡ଼ୁଥିଲେ ଯଜ୍ଞରେ ଆହୂତି । କଏ କେତେ ପ୍ରକାର ଆକ୍ଷେପ ଓ ବିଦ୍ରୂପରେ ବିବ୍ରତ ହୋଇ ଉଠୁଥିଲେ । ଟେବୁଲ ବାଡ଼େଇ ନାଲି ନାଲି ଆଖି ଦେଖାଇ କେହି କହୁଥିଲା ଆମେ ତୁମକୁ ଦେଖିନେବୁ ଓ ଆଉ କେହି ଅତି ଦର୍ପରେ ପାଲଣ୍‌କରା ଘୋଡାର ଟାଇଁପିଆ ହାଲ୍‌କୁ ଦେଖାଉଥିଲେ । ସାମାନ୍ୟତମ ସୌଜନ୍ୟତା ନଥିଲା ସେମାନଙ୍କର । ତାଙ୍କର ଆଦର୍ଶ ଯେମିତି ଧୂଆଁଳିଆ ଲାଗୁଥିଲା । ସେଇମାନଙ୍କ ପାଇଁ

ତାଙ୍କର ସମସ୍ତ ଶ୍ରମ ଚେଷ୍ଟା ଯେପରି ମୁହୂର୍ତ୍ତିକ ମଧ୍ୟରେ ନଷ୍ଟ ହୋଇ ଯାଉଥିଲା । ଗଛଶିଉଳି ଫୁଲପରି ତାଙ୍କୁ ଦଳିମକଚି ରକ୍ତାକ୍ତ କରି କ୍ଷତବିକ୍ଷତ ଅବସ୍ଥାରେ ଫିଙ୍ଗି ଦେବାର ପ୍ରଚେଷ୍ଟାରେ ଥିଲେ କେତେକ ।

ତଥାପି ତାଙ୍କ ମନରେ ନଥିଲା ଦୁଃଖ । ଜୀବନକୁ ଭଲ ପାଉଥିବା ବେଳେ କିଏ କଣ କହିଦେଲା ବୋଲି ସେ ତ ଆନ୍ଦୋଳନରୁ ଅଲଗା ହୋଇ ଯାଇ ପାରିବେ ନାହିଁ ।

ଟ୍ରେନ୍ ଖୁବ୍ ଜୋରରେ ଦୌଡ଼ୁଥିଲା । ଶୋଇ ରହିଥିଲେ ସନାତନ । ବାହାରେ ଭୀଷଣ ବର୍ଷା । ବର୍ଷାର ଟୁପୁରୁଟୁପୁ ଶବ୍ଦରେ ସେ ମୋହିତ ହେଉଥିଲେ । ସେଇ ଶବ୍ଦ ଭିତରୁ ଯେମିତି ଆସୁଥିଲା ତାଙ୍କର ଅବଚେତନ ମନକୁ କେତେ ଆଶା ଓ ଓ ଭରସା । ଜନବର୍ଷ ତଳର କଥା ମନେ ପଡ଼ୁଥିଲା । ଦିନସାରା କ୍ରମାଗତ ବର୍ଷା ଲାଗି ରହିଥିଲା ଠିକ୍ ଏହିପରି । ସନ୍ଧ୍ୟାବେଳେ ଥିଲା ରାଜଧାନୀରେ ଏକ ବିଗ୍ରାଟ ରାଲି ଓ ମିଟିଂ, ପୀଯୁ ବୃଷ୍ଟିମାଉଳ ଧରି ରାଲିର ନେତୃତ୍ୱ ନେଇ ସେ ପୁରପୁରି ଭିଜି ଯାଇଥିଲେ । ସେହି ଓଦା ସପ ସପ ଲୁଗାରେ ସେ ଫେରିଥିଲେ ଘରକୁ ସନ୍ଧ୍ୟା ସାତଟାବେଳେ, ଜ୍ୱରରେ ଦେହ କମ୍ପୁଥିଲା । ଦେହର ତାପ ଟନ୍‌ମନ୍ ହୋଇ ଫୁଟୁଥିଲା । ଶୋଇ ପଡ଼ିବାକୁ ମନ ବିକଳ ହୋଇ ଉଠୁଥିଲା । ପତ୍ନୀ ତାଙ୍କର ଏ ଅବସ୍ଥାକୁ ଲକ୍ଷ୍ୟ କରି କିଛି ନ କହି ଚା'ଲି ପ୍ରସ୍ତୁତ କରୁଥିଲେ । ପ୍ରଥମେ ଗ୍ଲୁକପଟିଏ ପିଇଦେଇ ବସି ବସି କହି ଝଣ୍ଡିଏ ପଢ଼ିବାରେ ମନ ଲଗାଇ ଦେଇଥିଲେ । ତାଙ୍କର ଏକାନ୍ତ ଜୀବନର ସାଥୀ ଓ ବନ୍ଧୁ ଏହି ବହି କେତୋଟି ତାରି ଭିତରେ ସେ ପାଉଥିଲେ ଅନେକ ପ୍ରେରଣା, ବଞ୍ଚିବାର ସଂଗ୍ରାମ କରିବାର । ମୁଣ୍ଡଟା ଭାରି ଭାରି ଲାଗୁଥିଲା । ବିରକ୍ତ ବୋଧ ହେଉଥିଲା । ହଠାତ୍ ବାହାର କବାଟରେ ଠକ୍ ଠକ୍ ଶବ୍ଦ । ଭିତରକୁ ପଶି ଆସିଲେ ସନାତନ ଦୂରରେ ଥିବା କୌଣସି ଶାଖାରେ କାର୍ଯ୍ୟ କରୁଛନ୍ତି । ରାତି ୯ଟା ବାଜିଲାଣି । ଅବେଳରେ ଆସିବାର କାରଣ ପଚାରିଲେ । ପାଖ ଚୌକିରେ ବସି ସନାତନ ତାଙ୍କ ଘର କଥା ଗପିବାକୁ ଲାଗିଲେ । ପକେଟରୁ କାଢ଼ି ଦେଖାଇଲେ ପତ୍ନୀଙ୍କର ଚିଠି କେତେ ଅନୁନୟ, ବିନୟ କେତେ ଆକୁଳ ନିବେଦନ । ତାଙ୍କର ଟ୍ରାନ୍‌ସଫର ଦରକାର । ରାଜଧାନୀକୁ । ଏଠାକୁ ଆସିଗଲେ ସେ ସବୁଦିନ ପାଇଁ ତାଙ୍କ ପ୍ରତି କୃତଜ୍ଞ ହୋଇ ରହିବେ । ତାଙ୍କର ଏକାନ୍ତ ବିଶ୍ୱସ୍ତ ଭାବରେ କାର୍ଯ୍ୟ କରିବେ । ତାଙ୍କ ପାଇଁ ସେ ନିଜ ଜୀବନ ଦେବାକୁ ପଛେଇବେ ନାହିଁ । ତାଙ୍କର ଅବଶିଷ୍ଟ ଜୀବନକୁ ସେ ତାଙ୍କ ତାଙ୍କ ପାଖରେ ବନ୍ଧୀ କରିଦେବେ । ତାଙ୍କ ପରିବାର ମୁହଁରେ ସେ ଟିକିଏ ହସ ଦେଖିଲେ, ତାଙ୍କର ସବୁ ଦୁଃଖ ଦୂର ହୋଇଯିବ । ଚିଠିଟା ପଢ଼ି ଶୁଣାଉଥିଲେ ସନାତନ । କେତେ ଆକୁଳରେ ତାଙ୍କ ସ୍ତ୍ରୀ ଲେଖିଛନ୍ତି ଚଞ୍ଚଳ ରାଜଧାନୀକୁ ଆସିବାକୁ ।

ଦେହରେ ଫୁଟୁଥିବା ତାଢ ଅଣ୍ଡା ମଢ଼ଗଲା ଯେପରି । "ଆଃ, କି ଆନନ୍ଦ" ମନେ ମନେ ଭାବିଲେ ସର୍ବାନନ୍ଦ । ତାଙ୍କ ପରିଶ୍ରମ ସାଫଲ୍ୟ ହୋଇଛି । ଟ୍ରେଡ୍ ଇଉନିୟନରେ ରହି କେତେ ଆଶା ଓ ବିଶ୍ୱାସରେ ବଞ୍ଚୁନାହାନ୍ତି ସେ । ସନାତନ ପରି ସାଥୀ ଥିଲେ ତାଙ୍କର ଦୁଃଖ କଣ ? ସେମାନେ ହିଁ ତାଙ୍କ ଦୁଃଖକୁ ସୁଖରେ ପରିଣତ କରିଦେବେ । ଶାରୀରିକ ଯନ୍ତ୍ରଣା ସତ୍ତ୍ୱେ ସେ ବସି ଗପକଲେ ସାଙ୍ଗ ସମସ୍ତ ଏବଂ ପ୍ରତିଶ୍ରୁତି ପାଳନ କରିବେ ବୋଲି ଅଙ୍ଗୀକାରବଦ୍ଧ ହେଲେ ।

ସେହି ସନାତନ ବର୍ତ୍ତମାନ ତାଙ୍କ ଅଫିସରେ ଅଛନ୍ତି । ରାଜଧାନୀର ଯାବତୀୟ ଅସାମାଜିକ ଲୋକମାନଙ୍କ ସହିତ ତାଙ୍କର ସମ୍ପର୍କ ବୋଲି ସର୍ବାନନ୍ଦ ଶୁଣିବାକୁ ପାଆନ୍ତି । ଫିଲ୍ମରେ ପାର୍ଟ କରୁଥିବା ହିରୋମାନଙ୍କୁ ଅନୁକରଣ କରିବାର ପ୍ରଚେଷ୍ଟାରେ ସେ ପଛଉ ନାହାନ୍ତି । ନିଜର ସମସ୍ତ ସୁଖ ସୁବିଧାରୁ ବଞ୍ଚିତ ହେବାକୁ ଇଚ୍ଛା କରନ୍ତି ନାହିଁ । ବଡ଼ଲୋକ କୌଣସି ମିଟିଂରେ ତାଙ୍କୁ କେହି ଦେଖିନାହିଁ । ଅଶ୍ରାବ୍ୟ ଓ ଅସଭ୍ୟ ଭାଷା କହି କେହି କେବେ ନେତା ହୋଇନି । ସନାତନ ନୂଆ ହୋଇ ନେତା ହେବାକୁ ଚେଷ୍ଟା କରୁଛନ୍ତି । ରାଜନୀତିର ଶ୍ରେଷ୍ଠ ନେତାଙ୍କ ପରି କୁନି ନେତାଟିଏ ସାଜିଦେଲେ ରାତିରେ ପୁରା ବୋତଲର ମାତ୍ରା ଆଉ ଟିକିଏ ବଢ଼ିଯିବ । ସାଙ୍ଗମାନେ ମଧ୍ୟ ଜୁଟି ଯାଇଛନ୍ତି, କିଏ କେତେ କାହାକୁ ଟେକାଟେକି କରି ଦେଉଛନ୍ତି । ଦେଶୀ ବିଦେଶୀ ବୋତଲ ସାଙ୍ଗକୁ ମାଂସଝୋଳ ତାସ୍ ଖେଳରୁ କିଛି କିଛି ପଇସା ମଧ୍ୟ ହାତକୁ ଲାଗିଯାଉଛି । କୋଉକଥାକୁ ପରବାଏ ନାହିଁ । ନିଜ ଭୂମି ପିଟିବାକୁ ଚେଷ୍ଟା କରୁଛନ୍ତି । ଟେବୁଲ୍ ବାଡ଼େଇ ସେଇ ସନାତନ ବର୍ତ୍ତମାନ ମୁଖ୍ୟ ଗୁଟିଆ ସାଜିଛନ୍ତି ଅନ୍ୟ ବୋଲିରେ ପଡ଼ି । ମୁଣ୍ଡଟାକୁ ଅନ୍ୟ ପାଖରେ ଧାରି ଦେଇ ମସଲା ଖୋଜୁଛନ୍ତି । ସେ କୃତଜ୍ଞ ହେବାକୁ ଯାଇ କୃତଘ୍ନ ହୋଇ ପଡ଼ିଛନ୍ତି । ତଥାପି ସର୍ବାନନ୍ଦ କ୍ଷୋଭ କରି ନାହାନ୍ତି । ସେ ଟ୍ରେଡ୍ ଇଉନିୟନ ଦର୍ଶନରେ ବିଶ୍ୱାସ କରନ୍ତି । ସଂଗ୍ରାମ ତାଙ୍କ ପାଇଁ ଚିର ସହଚର । ନିଜ ସଂଗ୍ରାମରେ ଯୁଝିବାବେଳେ ସେ କେବେ ଦବିଯାଇ ନାହାନ୍ତି । ମୂଲ୍ୟବୋଧକୁ ଧରି ରଖିଛନ୍ତି । ପରିସ୍ଥିତିକୁ ଯାବୋଡ଼ଧରି ଚାଲିଥାନ୍ତି । ନୂଆ ପିରାମିଡ୍ ଗଠନ କଲାବେଳେ ସେ ପୁରାତନ ମୂଲ୍ୟବୋଧକୁ ଭୁଲି ନାହାନ୍ତି, ପଛରେ ପକେଇ ଦେଇ ଆସି ନାହାନ୍ତି । ମାର୍କସ ଦର୍ଶନର ବିନିଯୋଗ କରି ସାମାଜିକ ପରିବର୍ତ୍ତନ କରିବାବେଳେ ମଣିଷମାନଙ୍କୁ ନେବାପାଇଁ କିଛିଟା ପ୍ରଚେଷ୍ଟା କରିଛନ୍ତି । ନେତା ହେବାର ବାହାସ୍ଫୋଟ ମାରି ନାହାନ୍ତି । ଯାହାକିଛି ଅନ୍ୟମାନଙ୍କ ଦୃଷ୍ଟିରେ ସେ ପାଇଛନ୍ତି, ତାହା ଅଯାଚିତ ଭାବରେ ତାଙ୍କୁ ମିଳିଛି । ତ୍ୟାଗ ହିଁ ଧ୍ୟେୟ ତାଙ୍କ ପାଇଁ ଭୋଗ ନୁହେଁ । ବସ୍ତୁବାଦ ଭାବନାରେ ସେ କେବେ ମନ ବଳାଇ ନାହାନ୍ତି । ସର୍ବହରାଶ୍ରେଣୀର ଏକ ନାୟକତ୍ୱ ପାଇଁ ସଂଗ୍ରାମ କରିବାକୁ ସେ ସଦା

ସଙ୍ଘ ପ୍ରସ୍ତୁତ ଥିଲାବେଳେ ଭାରତବର୍ଷରେ ମୂଲ୍ୟବୋଧର ପ୍ରାଚୀନ ପରମ୍ପରାକୁ ବଦଳାଇ ଦେଇ ସାମାଜିକ ପରିବର୍ତ୍ତନ କଲେ ତାହା ଅଳ୍ପ ଦିନରେ ଭିତ୍ତିହୀନ ପର୍ଯ୍ୟବ ବୋଲି ସେ ଜାଣନ୍ତି । ଏ ସମାଜର ଆତ୍ମା ଅବକ୍ଷୟର ସୂଚନା ଦିଏ । ସେଥିପାଇଁ ସେ କମ୍ରେଡ଼ମାନଙ୍କୁ ଟ୍ରେଡ୍ ଇଉନିୟନ୍‌ର ଉଚ୍ଚ ଆଦର୍ଶକୁ ଟାଣନ୍ତି । ଟ୍ରେଡ୍ ଇଉନିୟନ ଆଦର୍ଶ ଭିତରେ ମଣିଷକୁ ପରିବର୍ତ୍ତନ କରି ପାରିନାହାନ୍ତି ସେ ଏ ପର୍ଯ୍ୟନ୍ତ ।

ସେଥିପାଇଁ ଅନେକ ସମୟରେ ବହୁତ ମାନସିକ ଦୁଃଖ ଭୋଗ କରୁଛନ୍ତି । ତାଙ୍କ ସହିତ ରହି ଆସିଥିବା ସୁବିର ମଧ୍ୟ ନିଜ ସ୍ୱାର୍ଥକୁ ଅବୋରି କେତେ କଟୁ ମନ୍ତବ୍ୟ ଦେଇଛନ୍ତି । ନିଜ କାମଟି ହାସଲ କରି ସାରିବା ପରେ ତାଙ୍କୁ ଠେଲି ଦେଉଛନ୍ତି ଅମୂଳ୍ୟ ଗାତ ଭିତରକୁ । ସେ କିନ୍ତୁ ବାରମ୍ବାର ଗାତ ଭିତରୁ ପଦାକୁ ବାହାରି ଆସିଛନ୍ତି ଅଧିକ ଆଶା ଓ ବିଶ୍ୱାସ ନେଇ । ଏଇ କେତେଦିନ ଭିତରେ ସେ କେତେ ସନାତନ ଓ ସୁବିରଙ୍କୁ ଦେଖିଲେଣି । ଗୋଟିକପରେ ଗୋଟିଏ ଆସୁଛନ୍ତି । ସେମାନେ ମନରେ କେତେ ବିଶ୍ୱାସ ଜନ୍ମାଉଛନ୍ତି । ମାତ୍ର ସମୟକ୍ରମେ ସ୍ୱାର୍ଥକୁ ଜାବୋଡ଼ିଧରି, ଦୂରକୁ ଆପେ ଆପେ ଠେଲି ହୋଇ ପଡ଼ୁଛନ୍ତି । ଟ୍ରେନ୍ ଦ୍ରୁତଗତିରେ ଆଗେଇ ଚାଲିଛି । ଖୁବ୍ ଜୋରରେ ବର୍ଷା ଚାଚ ଦେହରେ ବାଡ଼େଇ ହେଉଛି ଆଉ ଅଳ୍ପ ସମୟ ପରେ ମାଡ୍ରାସରେ ପହଞ୍ଚିବ । ସେଠାରୁ ଟ୍ରେନକୁ ବଦଳାଇ ବାଙ୍ଗାଲୋର ଯିବାକୁ ହେବ । ଆସିବାବେଳେ ପୁଅ ଦେହଟା ଖରାପ ଥିଲା । ମନଟା ସମୟ ସମୟରେ ବିପର୍ଯ୍ୟସ୍ତ ହୋଇ ଯାଉଛି । ଦେହଟା ବଡ଼ ଅଳସ ଓ ବିବଶବୋଧ ହେଉଛି ତଥାପି ସଂଗ୍ରାମର ନେତୃତ୍ୱ ନେଇ ସେ ଆଗେଇ ଆସିଛନ୍ତି । କେତେ ଷଡ଼ଯନ୍ତ୍ର ତାଙ୍କ ପାଇଁ ନ ହୋଇଛି କୁହେଁ । ସବୁକୁ ଅତିକ୍ରମ କରିବାର ପ୍ରଚେଷ୍ଟାରେ ସେ ନିଜର ଚେଷ୍ଟାକୁ ଅବ୍ୟାହତ ରଖିଛନ୍ତି କାରଣ ସଂଗ୍ରାମ ହେଉଛି ଏକମାତ୍ର ପନ୍ଥା ଯାହା ମଣିଷକୁ କେନ୍ଦ୍ରସ୍ଥଳକୁ ଆଣିପାରିବ । ସଂଗ୍ରାମ ଆହ୍ୱାନ କରୁଅଛି ସେଥିପାଇଁ କୌଣସି ଚିନ୍ତା ନ କରି ସଂଗ୍ରାମ କରିବାକୁ ହେବ । ଟ୍ରେଡ୍ ଇଉନିୟନର ଶେଷ ଦର୍ଶନ ହେଉଛି ଅସତ୍ୟକୁ ତ୍ୟାଗ କରିବା ସତ୍ୟକୁ ଗ୍ରହଣ କରିବା । ସନାତନ, ସୁବିର ଇତ୍ୟାଦି ପାର୍ଥିବ ମୋହରେ ମୁଗ୍ଧ । ସେମାନେ କେନ୍ଦ୍ରସ୍ଥଳୀକୁ ଆସିବାକୁ ପ୍ରସ୍ତୁତ ନୁହନ୍ତି । ସେମାନଙ୍କ ପାଇଁ ନିଜର ସ୍ୱାର୍ଥ ହିଁ ସବୁକିଛି । ସେମାନେ ପୃଥିବୀର ମୌଳିକ ପରିବର୍ତ୍ତନ ପାଇଁ ଦୃଷ୍ଟି ଦେଇ ନାହାନ୍ତି । ତାଙ୍କ ନିଜର ଜଗତରେ ସୃଷ୍ଟି ହେଉଥିବା ବିଳାସ ଦ୍ରବ୍ୟ ହିଁ ଶ୍ରେଷ୍ଠ । ଜଗତ ବଡ଼ ସୁଖପୂର୍ଣ୍ଣ । ଏଠାରେ ମିଳିପାରୁଛି ସୁସ୍ୱାଦୁପୂର୍ଣ୍ଣ ପାନ ଓ ମାଂସପରି ଲୋଭନୀୟ ଖାଦ୍ୟ । ଟ୍ରେଡ୍ ଇଉନିୟନ୍ କରି ନିଜ ସ୍ୱାର୍ଥକୁ ଆହୁତି ଦେଇ କ'ଣ ମିଳିବ ସେଥିରୁ । ନିଜ ସ୍ୱାର୍ଥକୁ ସାଧନ କରିବା ପାଇଁ ଟ୍ରେଡ୍ ଇଉନିୟନ ନେତା ହେଉଛନ୍ତି ମାଧ୍ୟମ । ସ୍ୱାର୍ଥ ସରିଗଲେ ସଙ୍ଗଠନ ମୂଲ୍ୟହୀନ, ନେତୃତ୍ୱ ଦୋଷଯୁକ୍ତ ସନାତନ ଏ ବିଦ୍ୟାରେ ପାରଙ୍ଗମ । କାରଣ ସେ ନିଜେ ନିଜକୁ ବୁଝିବାକୁ ଅକ୍ଷମ । ତାଙ୍କର ଚେତନାର ବ୍ୟାପକତା ସୀମିତ ।

ମଣିଷ ହେଉଛି ସବୁଠାରୁ ଜଟିଳ ଜୀବ, ନିଜର ବୁଦ୍ଧି ହିଁ ନିଜକୁ ଧ୍ୱଂସ ଆଡ଼କୁ ଟାଣେ । ସେଥିପାଇଁ ମଣିଷ ବିଭିନ୍ନ ଭାବରେ ପରୀକ୍ଷା ନିରୀକ୍ଷା କରେ ।

ସତ୍ୟର ଅନୁସନ୍ଧାନ କରେ । ସେ ନିଜକୁ ଜାଣିବା ହେଉଛି ଅସାଧ୍ୟ ପ୍ରହେଳିକା ସକଳ ସମସ୍ୟାର ଅନ୍ତର୍ନିହିତ ମୂଳସମସ୍ୟା । ମନୁଷ୍ୟର ଏହି ସ୍ୱରୂପଟି ମଣିଷ ପାଇଁ ସବୁପ୍ରକାର ଜ୍ଞାନ, ସବୁପ୍ରକାର କାର୍ଯ୍ୟକଳାପର ମୂଳବସ୍ତୁ ଓ ଶେଷ ଆଧାର । ଏପରି କୌଣସି ସମସ୍ୟା ନ ଥିଲା, ଏପରି କୌଣସି ସମସ୍ୟା ଆସିବ ନାହିଁ ଯେତେବେଳେ ମନୁଷ୍ୟର ନିଜର ସ୍ୱରୂପ ତାହାର ସର୍ବାଧିକ ମନଯୋଗ ଆକର୍ଷଣ କରିବ ନାହିଁ ମାତ୍ର ତାହା କେତେଦିନ ଲାଗିବ କିଏ କହିପାରେ ।

ସର୍ବାନନ୍ଦ ଅନ୍ୟମନସ୍କ ଭାବରେ ଚିନ୍ତା କରୁ କରୁ ଦର୍ଶନର ନିଗୂଢ଼ ତତ୍ତ୍ୱମାନଙ୍କୁ ମାଡ଼ି ଚାଲି ଯାଉଥିଲେ । ଭାରତୀୟ ବେଦାନ୍ତ ଦର୍ଶନକୁ ମନେ ମନେ ତର୍ଜମା କରୁଥିଲେ । ମାର୍କସଙ୍କର ଦାସ କ୍ୟାପିଟାଲର ଧାଡ଼ିମାନଙ୍କୁ ମନେ ପକାଉଥିଲେ । ଭାରତୀୟମାନଙ୍କ ଚାଲିଚଳନର ଛନ୍ଦେ ଛନ୍ଦେ ପୂରି ରହିଛି ସାଂସ୍କୃତିକ ଚେତନା, ସ୍ୱାର୍ଥ ତ୍ୟାଗର ଭାବନା । ସେଥିପାଇଁ ସେ ଭାରତୀୟ ଭାବରେ ଗର୍ବ କରନ୍ତି । ତେବେ କାହିଁକି ସନାତନ ଓ ସ୍ୱଭାବ ପରି ଲୋକମାନେ ମଧ୍ୟ ଥାଆନ୍ତି ? ବୋଧହୁଏ ଏମାନେ ରହିବାକୁ ବାଧ୍ୟ ନହେଲେ ସମାଜ ଚଳି ପାରନ୍ତା ନାହିଁ । ଟ୍ରେନ୍ ଇଞ୍ଜିନ୍ ଠିକ୍ ବାଟରେ ଆଗେଇ ଚାଲନ୍ତା ନାହିଁ । ଏହା ତାର ମୂଳ ଲକ୍ଷ୍ୟଠାରୁ ଦୂରେଇ ଯାଆନ୍ତା । ଟ୍ରେନ୍ ଇଞ୍ଜିନ୍‌ରେ ବାରମ୍ବାର ଏହିକଥା ଘଟେ । ପାଖରେ ଥିବା ତିନିଗୋଟି ପଶାକାଠିକୁ ବାରମ୍ବାର ଗଡ଼ାଇଲେ ସେହି ସଂଖ୍ୟାଗୁଡ଼ିକ ବାରମ୍ବାର ଦେଖାଦେବ । ମଣିଷର ଜନ୍ମ ସେପରି । କେହି କେହି ସାଂସାରିକ ଭୋଗସୁଖ ଭିତରେ ହିଁ ରହିଯାନ୍ତି । ଉଚ୍ଚତର ସ୍ଥାନକୁ କେବେହେଲେ ପାଆନ୍ତି ନାହିଁ । କିନ୍ତୁ ଯେଉଁମାନେ ଉଚ୍ଚତର ସ୍ତରକୁ ଆରୋହଣ କରିବାକୁ ଚାହାଁନ୍ତି, ସେମାନେ ଦେଖନ୍ତି ଏହିସବୁ ଭୋଗ ସତ୍ୟ ଚରମ ଲକ୍ଷ୍ୟ ନୁହେଁ, ଆନୁସଙ୍ଗିକ ମାତ୍ର ।

ଟ୍ରେନର ଗତି ଧୀର ହୋଇ ଅସିଲା । ବର୍ଷା ଜମିଗଲାଣି । ସାଙ୍ଗରେ ଆସିଥିବା କମ୍ରେଡ୍‌ମାନେ ନିଜ ନିଜର ବ୍ୟାଗମାନଙ୍କରେ ଜିନିଷପତ୍ର ଭର୍ତ୍ତି କରିବାରେ ବ୍ୟସ୍ତ । ସର୍ବାନନ୍ଦ ଏବେ ବି ଚିନ୍ତାମୁକ୍ତ ନୁହଁନ୍ତି । ତାଙ୍କ ଅଗରେ ଅନେକ ଅତୀତ ଭବିଷ୍ୟତ ଓ ବର୍ତ୍ତମାନ ।

କୋଲାହଳମୟ ମାଡ୍ରାସ ଷ୍ଟେସନରେ ଓହ୍ଲାଇଥିଲେ ସେ ତାଙ୍କର ବ୍ୟାଗକୁ କେହି କମ୍ରେଡ୍ ସାଙ୍ଗରେ ନେଇ ଗଲାଣି ।

ସେ ଏବେ ବି ଅନେକ ଚିନ୍ତା ଭିତରେ, ଆଗାମୀ ଦିନର ବଂଶଧରମାନଙ୍କ ପାଇଁ କ'ଣ କରିବାକୁ ହେବ ଭାବନାରତ । କେହି ସ୍ଲୋଗାନ ଦେବାକୁ ଆରମ୍ଭ କରି ଦେଲେଣି କମ୍ରେଡ୍ ସର୍ବାନନ୍ଦ ଜିନ୍ଦାବାଦ । ଅଜସ୍ର ଫୁଲମାଳ ଭିତରେ ପୋତି ହୋଇ ପଡ଼ୁଛନ୍ତି ସେ । ସଦ୍ୟ ରକ୍ତ ଗୋଲାପ ଫୁଲର ମାଳା ପିନ୍ଧାଇ ଦେଇ ସାଥିମାନେ କରମର୍ଦ୍ଦନ କରି ଚାଲିଛନ୍ତି । ଫୁଲହାର ଭିତରେ କେଉଁଠି ଗ୍ଲେଟ କାଟିଟିଏ । ଟପିକ ଯାଉଛି ଗ୍ରୀବ ଭିତରେ । ତା' ଉପରେ ମଡ଼ାହୋଇ ଚାଲିଛି ଫୁଲହାର ଉପରେ ଫୁଲହାର ତାହା ହେଉଛି ସ୍ନେହ, ପ୍ରେମ ଓ ତ୍ୟାଗର ବନ୍ଧନ ।

ଆଗକୁ ମାଡ଼ି ଚାଲିଛନ୍ତି ସର୍ବାନନ୍ଦ କମ୍ରେଡ୍ମାନଙ୍କ ସହିତ ପାହୁଣ୍ଡ ପକାଇ ତଥାପି ଟଳନ୍ତି । ଗୋଲାପ ମାଳରେ ଥିବା କାଟିଟି ସଣକ୍ର ମାଳାଗୁଡ଼ିକର ଚାପରେ ମୃତହୋଇ କେତେବେଳୁ ଭୂତଳଶାୟୀ ହେଲେଣି । ଅଶ୍ୱାସ ଲାଗୁଛି ତାଙ୍କୁ । ଦୀର୍ଘ ନିଶ୍ୱାସ ନେଉଛନ୍ତି ସେ—ବିଶ୍ୱାସରେ—ଆତ୍ମବିଶ୍ୱାସରେ ଆଗକୁ ମାଡ଼ି ଚାଲିବାର ।



# ମୃଗତୃଷ୍ଣା

ସୁପ୍ରଭା ଶୋଇ ରହିଛନ୍ତି । ମୁହଁରେ ଲେଶମାତ୍ର ଦ୍ୱନ୍ଦ୍ୱର ଚିହ୍ନବର୍ଣ୍ଣ ନାହିଁ । ନାଇଟ୍ ଗାଉନ୍ ଭିତରେ ସମସ୍ତ ଶରୀରଟାକୁ ଘୋଡ଼ାଇ ଦେଇଛନ୍ତି ସେ ।

ସୁଦୀପ୍ତ ଭାବୁଛନ୍ତି ସୁପ୍ରଭାଙ୍କ କଥା । ସୁପ୍ରଭା ତାଙ୍କର ପତ୍ନୀ କିମ୍ବା ପ୍ରେମିକା ନୁହନ୍ତି । ସେ ତାଙ୍କର କୌଣସି ନିକଟ ଆତ୍ମୀୟ ସମ୍ପର୍କୀୟ ମଧ୍ୟ ନୁହନ୍ତି । ସେ ଯେପରି ତାଙ୍କର ଅତି ଆପଣାର, ଅତି ନିକଟର । ସେଥିପାଇଁ ତ ତାଙ୍କ ସହିତ ନିର୍ଦ୍ୱନ୍ଦରେ ସେ ଦିଲ୍ଲୀ ସହରକୁ ଆସିପାରିଛନ୍ତି । ହୋଟେଲର ସନ୍ନିକଟ ପ୍ରକୋଷ୍ଠରେ ରହିଛନ୍ତି ।

ଆସିବା ଦିନ କଥା ମନେ ପକାଉଛନ୍ତି ସୁଦୀପ୍ତ । କୌଣସି କାର୍ଯ୍ୟ ଉପଲକ୍ଷରେ ଦିଲ୍ଲୀ ଆସିବାବେଳେ ହଠାତ୍ ସୁପ୍ରଭା ତାଙ୍କୁ ପଚାରିଲେ, "ସୁଦୀପ୍ତ ବାବୁ । ଆପଣଙ୍କର ଯଦି କିଛି ଆପତ୍ତି ନଥାଏ, ମୁଁ ଆପଣଙ୍କ ସହିତ ଦିଲ୍ଲୀ ଯାଇପାରେ । ମୋତେ ଘରେ ବସି ବସି ବୋରଲାଗିଲାଣି । ଟିକଏ ବୁଲାବୁଲି କଲେ ହୁଏତ ମନଟା ହାଲକା ଲାଗିବ । ବହୁଦିନ ହେଲା ମନେକଲିଣି ଦିଲ୍ଲୀ ଯିବାପାଇଁ ମାତ୍ର ସମୟ ଓ ସୁବିଧା ଜୁଟୁ ନଥିଲା । ଆପଣ ଯେତେବେଳେ ଯାଉଛନ୍ତି, ସେତେବେଳେ ମୋର କିଛି ଅସୁବିଧା ହେବନାହିଁ । ଆପଣ ଅରାଜି ହେବେ ନାହିଁ ବୋଲି ଆଶା ।"

ସୁଦୀପ୍ତ କହି ପାରି ନଥିଲେ କିଛି । ସେ ଜାଣିଥିଲେ ସୁପ୍ରଭାଙ୍କୁ ସାଙ୍ଗରେ ନେଲେ ତାଙ୍କର କୌଣସି ଅସୁବିଧା ହୋଇ ନପାରେ ମାତ୍ର······ । ଅନେକ କାର୍ଯ୍ୟ ଭିତରେ କିପରି ସେ ସୁପ୍ରଭାଙ୍କ କଥା ବୁଝି ପାରିବେ ସେ କଥା ହିଁ ଥିଲା ତାଙ୍କର ମୁଖ୍ୟ ଚିନ୍ତା ।

ଟ୍ରେନ ଟିକଟ ସହଜରେ ମିଳି ଯାଇଥିଲା । ଅନ୍ୟାନ୍ୟ ସହଯାତ୍ରୀଙ୍କ ସହିତ ଖୁବ୍ ସହଜ ହୋଇଥିଲେ ସୁପ୍ରଭା । ବନ୍ୟ ହରିଣୀଟିଏ ପଞ୍ଜୁରୀ ଭିତରେ ବନ୍ଦୀ ରହି ନିଷ୍କ୍ରିୟ ହୋଇ ପଡ଼ିଥିଲା ଏବଂ ଫିଟିବା ମାତ୍ରେ ଯେପରି ଚାରିଆଡ଼େ ବ୍ୟାପି ଯାଉଥିଲା ।

ସମସ୍ତେ ସୁପ୍ରଭାଙ୍କୁ ତାଗଫ୍ କରୁଥିଲେ ଟ୍ରେନ୍ ଭିତରେ । ସେମାନେ ଦିଲ୍ଲୀରେ ପହଞ୍ଚି ହୋଟେଲ ନ୍ୟୁ ଆଭେନ୍ୟୁର ଦକ୍ଷିଣ ପାର୍ଶ୍ୱର ଦୁଇଟି ଅଲଗା ଅଲଗା ରୁମ୍‌ରେ ରହିଥିଲେ ।

ଦୀର୍ଘ ସମୟର ଟ୍ରେନ୍ ଜର୍ଣ୍ଣିରେ କ୍ଳାନ୍ତଶ୍ରାନ୍ତ ମୁଦିତ୍ୱ ବାଥରୁମ୍‌ରେ ଗାଧୋଇ ଫ୍ରେସ୍ ହୋଇ ପଡ଼ିଥିଲେ ଏବଂ ନିଜ ରୁମ୍‌କୁ ଅନ୍ଧାର କରି ଶୋଇ ପଡ଼ିଥିଲେ ।

ସୁଦୀପ୍ତ ତାଙ୍କ ରୁମରେ ଶୋଇ ପାରୁନଥିଲେ । ଝରକା ପରଦା ଆଡ଼େଇ ଦେବା ମାତ୍ରେ ଜହ୍ନ ଆଲୁଅ ବିସ୍ତୃତ ପଡ଼ୁଥିଲା କୋଠରୀଟି ଭିତରେ । ମନେ ମନେ ସେ କେତେ କଥା ଭାବୁଥିଲେ ।

ଆଖିକୁ ନିଦ୍ରାଦେବୀ ମଧ୍ୟ ନିଦ ଆସୁ ନଥିଲା । ତାଙ୍କ ଆଖି ଆଗରେ ସୁପ୍ରଭାଙ୍କର ମୂର୍ତ୍ତିଟି ଭାସି ଉଠୁଥିଲା । ସୁପ୍ରଭା ଅନ୍ୟ କୋଠରୀରେ ଶୋଇ ରହିଥିବେ । ପ୍ରଥମଥର ପାଇଁ ସେ ଆସିଛନ୍ତି ବାହାରକୁ ଜଣେ ଯୁବତୀ ସହିତ । ଅବଶ୍ୟ ଅନେକ ଥର ସେ ତାଙ୍କର ପତ୍ନୀଙ୍କ ସହିତ କଟାଇଛନ୍ତି ଗୋଟିଏ ରୁମ୍‌ର ଗୋଟିଏ ବିଛଣାରେ । ପାଖରେ ଶୋଇବା ବେଳେ ସେ ପତ୍ନୀଙ୍କ ଉପସ୍ଥିତି ସେତେ ବେଶୀ ଉପଲବ୍ଧି କରି ପାରୁ ନଥିଲେ । ଅବଶ୍ୟ ତାଙ୍କ ଅଜାଣତରେ କେତେବେଳେ ଅବା ପତ୍ନୀଙ୍କର ନଗ୍ନ ଶରୀରଟା ତାଙ୍କ ଦେହରେ ଗୁଡ଼ାଇ ହୋଇ ଯାଉଥିଲା । ସେ ସେତେବେଳେ ଟିକିଏ ଶିହରଣ ଅନୁଭବ କରୁଥିଲେ ଏବଂ କ୍ରମଶଃ ସେ ଶରୀର ସହିତ ସମ୍ପୃକ୍ତ ପରିଚିତ ହୋଇ ପଡ଼ୁଥିଲେ । ସେ ଥିଲା ଭିନ୍ନ ପରିବେଶ । ବିବାହିତା ପତ୍ନୀ ସହିତ ଶାରୀରିକ ମିଳନ ଆଇନ ଅନୁମୋଦିତ । ପତ୍ନୀଙ୍କର ଇଚ୍ଛା ବା ଅନିଚ୍ଛା ବିରୁଦ୍ଧରେ ଯାହା କିଛି ସେହି ବିଛଣା ଉପରେ କରିଯାଇ ପାରେ । ପତ୍ନୀଙ୍କ ସହିତ ସୁଦୀପ୍ତଙ୍କର ଏ ଘନିଷ୍ଠ କିଛି ନୂଆ କଥା ନୁହେଁ । ଅନେକ ଦିନ ହେଲାଣି ଏବଂ ଆଜିକାଲି ପିଲାମାନଙ୍କର ଲମ୍ଵାଧାଡ଼ିରେ ସେ ବିଛଣାରେ ଶୋଇବାକୁ ସ୍ଥାନ ପାଉ ନାହାନ୍ତି ! ତାଙ୍କ ବିଛଣା ବଦଳି ଗଲାଣି ଅନ୍ୟ ରୁମ୍‌କୁ । ସେ ଆଉ ବେଶି ଅନୁଭବ କରୁନାହାନ୍ତି ପତ୍ନୀଙ୍କର ନଗ୍ନ ଶରୀରକୁ ।

ମାତ୍ର ଏଥରକ ପରିସ୍ଥିତି ଅହେତୁକ । ପ୍ରଥମଥର ପାଇଁ ଯୁବତୀଟିଏ ତାଙ୍କ ପାଖ କୋଠରୀରେ ଶୋଇଛନ୍ତି ଅତି ନିର୍ଲିପ୍ତ ଭାବରେ । ସୁଦୀପ୍ତଙ୍କ ଆଖିରେ ସୁପ୍ରଭାଙ୍କର ଶୋଇବାର ଚିତ୍ର ଭାସି ଉଠୁଥିଲା । ସେ ଯେପରି ଦେଖୁଥିଲେ ନାଇଟ୍ ଗାଉନ୍ ଭିତରୁ ତାଙ୍କ ଯୌବନ ବେଶ୍ ସ୍ପଷ୍ଟ ହୋଇ ପଡ଼ୁଛି । ସୁଦୀପ୍ତ କେବେ ତାଙ୍କ ସ୍ତ୍ରୀଙ୍କୁ ଏପରି ଦେଖି ନଥିଲେ ବା ଦେଖିବାର ଚେଷ୍ଟା କରି ନଥିଲେ । ସେ ଶୋଇବାକୁ ଯିବା ପୂର୍ବରୁ ଦେଖିଛନ୍ତି ସୁପ୍ରଭାଙ୍କୁ ।

ଅନେକ ଦିନ ହେଲା ସେ ତାଙ୍କର ଜଣାଶୁଣା । ବେଶ୍ କଥାବାର୍ତ୍ତା । କେବେ କାଳୁ ସୁଦତ୍ତ ତାଙ୍କ ଅଡ଼କୁ ଭଲ ଭାବରେ ଦୃଷ୍ଟି ପକାଇ ନଥିଲେ । ଆଜି ହଠାତ୍ ଚାହିଁବାବେଳେ ସେ ଏକ ଅପୂର୍ବ ରୋମାଞ୍ଚ ଅନୁଭବ କଲେ । ପତ୍ନୀଙ୍କର ନଗ୍ନ ଦେହଟା ତାଙ୍କ ଦେହରେ ଗୁଡ଼ାଇ ହେବା ବେଳେ ସେ ମଧ୍ୟ ଏମିତି ରୋମାଞ୍ଚ କେବେ ଅନୁଭବ କରୁ ନଥିଲେ ।

:

ସୁଦତ୍ତ ଏକ ଲୟରେ ଚାହିଁ ରହିଥିଲେ ଶୋଇଥିବା ସୁପ୍ରଭାଙ୍କ ଆଡ଼କୁ ନିର୍ନିମେଷ ନୟନରେ । ଶୋଇଥିବା ମୁହଁରେ କୌଣସି ପ୍ରକାର ବିକାର ଭାବନା ନଥିଲା । ସଦା ହସ ହସ ମୁହଁଟି ବେଶ୍ ସତେଜ ଦେଖାଯାଉଥିଲା । ପୁଶଳ ପୁଶଳ ଗାଲ ଦଇଟି ଓ ରକ୍ତିମ ଓଠଟା ବୋଧହୁଏ ମଝିରେ ମଝିରେ ଥରି ଉଠୁଥିଲା । ସୁଦତ୍ତ ଅନୁଭବ କରୁଥିଲେ କେହି ଯେପରି ଆହ୍ୱାନ କରି କହୁଛି । "ଶୋଇଥିବା ନାରୀଟି ତୁମର ସାନ୍ନିଧ୍ୟ ଇଚ୍ଛା କରୁଛି । ତା'ର ଶୁଷ୍କ ଓଠଟିକୁ ତୁମ ଓଠର ସ୍ପର୍ଶରେ ରସସିକ୍ତ କର । ଶରୀରଟାକୁ ନଗ୍ନଭରଣ କରି ତା'ଦେହରେ ତୁମେ ନିଜକୁ ଗୁଡ଼ାଇ ପକାଅ । ତୁମେ ଯୁବକ ସୁଦତ୍ତ । ତୁମ ମନରେ ଦ୍ୱନ୍ଦ୍ୱ ଶୋଭା ପାଏନି । ଯୌବନରେ ମତୁଆଲା ହୋଇ ତା'ର ଯୌବନକୁ ଛିନ୍ଭିନ୍ କର । ହାତ ପାଖରେ ଥୁଆ ହୋଇଥିବା ଗୋଲାପ ଫୁଲଟାକୁ ଦଳିମକଚି ଶୁଙ୍ଘି ଫିଙ୍ଗି ଦିଅ । ଆଗେଇ ଯାଅ । ଏତେ ଭାବିଲେ କୌଣସି କାର୍ଯ୍ୟ ସଫଳ ହୁଏନା ।"

ସୁଦତ୍ତ ଆଗେଇବାକୁ ଚେଷ୍ଟା କଲେ । ଆଃ, ତାଙ୍କର ପଥରୋଧ ହୋଇଯିବା ପରି ଲାଗିଲା । ବହୁ କଷ୍ଟରେ ସେ ଛିଡ଼ା ହେଲେ ସୁପ୍ରଭାଙ୍କ ବିଛଣା ନିକଟରେ । ଆସ୍ତେ ଆସ୍ତେ ଆଣ୍ଠୁମାଡ଼ି ବସି ପଡ଼ିଲେ ସେଠାରେ । ଚାହିଁ ରହିଲେ ନିର୍ନିମେଷ ନୟନରେ ଶୋଇଥିବା ସୁପ୍ରଭାଙ୍କୁ । ତାଙ୍କର ଓଠ ବାରମ୍ବାର ଥରି ଉଠୁଥିଲା । ନିଃଶ୍ୱାସ ବଢ଼ି ଚାଲିଥିଲା ଦ୍ରୁତ ଗତିରେ । ସୁପ୍ରଭାଙ୍କର ପୁଶଳ ପୁଶଳ ଗାଲରେ ଚୁମାଟିଏ ଆଙ୍କି ଦେବାକୁ ସେ ମୁହଁ ତାଙ୍କ ଆଡ଼କୁ ନେଲେ । ଆଖିରେ ପଡ଼ିଲା ତାଙ୍କ ଯୌବନକୁ ଉଦ୍‌ଘୋଷଣ କରୁଥିବା ସୁଗୋଲ ସ୍ତନ୍ୟଦ୍ୱୟ ଉପରେ । ଆଃ, ନାଇଟ୍ ଗାଉନ୍ ଭିତରୁ ସ୍ପଷ୍ଟ ବାରି ହୋଇ ପଡ଼ୁଥିଲା । ବୋଧହୁଏ ସେ ବ୍ରା ପିନ୍ଧି ନାହାନ୍ତି । ଏବେ ବି କୌଣସି ପୁରୁଷର ହାତର ସ୍ପର୍ଶ ଏମାନେ ପାଇନି ବୋଲି ସେ ଅନୁଭବ କରୁଥିଲେ । ବୋଧହୁଏ ସେ ହେବେ ପ୍ରଥମ ପୁରୁଷ ସେହି ଶୃଙ୍ଗରେ ପଦାର୍ପଣ କରିବେ । ବିବାହର ପ୍ରଥମ ଦିନରେ ମଧ୍ୟ ସେ ଏପରି ଅନୁଭବ କରି ନ ଥିଲେ । ଅଜଣା ଝିଅଟିକୁ ବାହାହୋଇ ପ୍ରଥମ ରାତିର କ୍ଷିଣ ଦୀପ ଶିଖା ମଧ୍ୟରେ ସେ ଚୁପ୍‌ଚାପ୍ ତାଙ୍କ ସହିତ ଶୋଇ ପଡ଼ିଥିଲେ । ସେ ସମୟ ଥିଲା ଶୀତ ରାତିର ସମୟ । ରେଜେଇ ଭିତରେ ଚୁପ୍‌ଚାପ୍ ଲେଟି ଯିବାବେଳେ ସେ

କେତେବେଳେ ନିଜର ନଗ୍ନ ଶରୀରକୁ ଅନ୍ୟ ଏକ ନଗ୍ନ ଦେହ ଭିତରେ ପାଉଥିଲେ ଏବଂ ପତ୍ନୀଙ୍କର ବକ୍ଷୋଜ ତାଙ୍କ ଛାତି ଭିତରେ ଲୁଚି ହୋଇ ଯାଉଥିଲା ।

ଆଜି କିନ୍ତୁ ସେ ସୁପ୍ରଭାଙ୍କର ବକ୍ଷୋଜ ଭିତରେ ନିଜକୁ ହଜାଇ ଦେଲେ । ନାଇଟ୍ ଗାଉନ୍ ଭିତରୁ ଛୁଟିକି ପଡ଼ୁଥିବା ଦ୍ରବ୍ୟଦ୍ୱୟ ତାଙ୍କ ଆଖିରୁ ଅଲଗା ହୋଇ ପାରୁନଥିଲା । ତାଙ୍କର ଆଖି ଲୋଭନୀୟ ମୁଖମଣ୍ଡଳ ଓ ଓଷ୍ଠରୁ ବକ୍ଷୋଜ ଉପରେ ନିବଦ୍ଧ ହୋଇ ରହିଲା । ହାତଟାକୁ କ୍ରମଶଃ ସେ ଆଡ଼କୁ ଅଗ୍ରସର କରାଇଲେ । ନାଇଟ୍ ଗାଉନ୍‌ର ପ୍ରଥମ ବୋତାମଟିକୁ ଖୋଲି ଦେଲେ ସେ ପୂର୍ଣ୍ଣପୂର୍ଣ ଦେଖି ପାରିବେ ସେହି ଯୁଗଳ ମୂର୍ତ୍ତି ଦୁଇଟିକୁ । କ'ଣ କରିବେ ତାକୁ । ସୁନ୍ଦର ଗୋଲାକାର ପିଣ୍ଡୁଳା ଦୁଇଟିକୁ ସେ ଧୀରେ ଧୀରେ ଆଉଁଷି ପକାଇବେ । କୌଣସି କଷ୍ଟ ଦେବେନାହିଁ ସେ ଦୁଇଟିକୁ । ସେ ତାଙ୍କର ହାତକୁ ଲମ୍ବାଇଲେ । ପାପୁଲିଟା କ୍ରମଶଃ କଠିନ ହୋଇଗଲାଣି । ଏ ପାପୁଲିରେ ଆଉଁଷିଲେ ଯଦି ସେହି ବସ୍ତୁ ଦ୍ୱୟରେ ଆଘାତ ଲାଗେ । ଯଦି ସୁପ୍ରଭାଙ୍କୁ କଷ୍ଟ ଲାଗେ । ନା, ସେ ତାଙ୍କୁ କଷ୍ଟ ଦେବେନି । ସେ ହାତରେ ତାକୁ ଆଉଁଷି ନ ଦେଇ, ଓଠରେ ଛୁଇଁ ଦେବେ । ଜିଭରେ ତା' ଉପରେ ଥିବା ସମସ୍ତ ଧୂଳୀମଳିକୁ ଚାଟିଚୁଟି ସଫା କରିଦେବେ । ତାଙ୍କୁ କୌଣସି ଉପାୟରେ କଷ୍ଟ ଦେବେନାହିଁ । ଅତି ସନ୍ତର୍ପଣରେ ହାତଟାକୁ ଓହ୍ଲାଇ ଆଣି ସେ ଜିଭ ଓ ଓଠକୁ ସେ ଆଡ଼କୁ ଅଗ୍ରସର କରାଇଲେ । ନାଇଟ୍ ଗାଉନ୍ ଭିତରେ ଅତି ଅସ୍ପଷ୍ଟ ଭାବରେ ବାରି ହୋଇ ପଡ଼ୁଥିଲା ସେହି କଞ୍ଚିଳ ଫଳ ଦୁଇଟି ।

ସୁଦୀପ୍ତ ସେ ଆଡ଼କୁ ଓଠ ବଢ଼ାଇଲେ ଅତି ସନ୍ତର୍ପଣରେ ଧୀରେ ଧୀରେ । ନାଇଟ୍ ଗାଉନ୍‌ର ବୋତାମଟା ନ ଖୋଲିଲେ କେବଳ କିଞ୍ଚିତ ଅଂଶ ହିଁ ଦେଖାଯାଏ ।

ମୁହଁ ଫେରାଇଲେ ସୁଦୀପ୍ତ । ହାତରେ ଖୋଲିବାକୁ ହେବ ନାଇଟ୍ ଗାଉନ୍‌ର ବୋତାମଗୁଡ଼ିକୁ ।

ହଠାତ୍ ଚିଡ଼ି-ଲେଉଟାଇଲେ ସୁପ୍ରଭା । ବକ୍ଷୋଜ ଦୁଇଟି ନିଜ ଭିତରେ ଧକ୍କା ଲାଗି ଲୁଚିଗଲେ କିଛି ସମୟ ।

ମୁହଁ ଫେରାଇଲେ ସୁଦୀପ୍ତ । ଚାହିଁ ରହିଲେ ପୁଣି ଥରେ ସୁପ୍ରଭାଙ୍କ ଆଡ଼କୁ । କେଶର ବନ୍ୟା ଭିତରେ ମୁହଁ ଲୁଚାଇ ସେ ହସିବା ଦେବାକୁ ଇଚ୍ଛା କଲେ । ନାଇଟ ଗାଉନ୍‌ଟା ଉଠି ପଡ଼ିଥିଲା ଆଣ୍ଠୁ ଉପରକୁ । ସେ ଧଳା ଧଳା ପାଦରେ ନେଲପଲିସର ଚକ୍‌ଚକ ଛଟା ଦେଖି ମୁଗ୍ଧ ହୋଇ ପଡ଼ିଲେ । ନା, ସେ ପ୍ରଥମେ ପାଦସ୍ପର୍ଶ କରି ଏହି ଅନନ୍ତ ଯୌବନା ଯୁବତୀଟିକୁ ବନ୍ଦନା କରିବେ । ସେ ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ବର୍ଣ୍ଣନା

କରି ତାଙ୍କ ଯୌବନର ଜୟଗାନ କରିବେ । ତାଙ୍କ ଯୌବନର ସ୍ପର୍ଶରେ ସେ ମୁଗ୍ଧ ହୋଇଯିବେ ଯେ ଏବଂ ତାଙ୍କୁ ମୁଗ୍ଧ କରିବା ପରେ ନାଇଟ୍ ଗାଉନ୍‌ଟାକୁ ପୁରାପୁରି ବଛଣା ସୁନ୍ଦରରେ ପରିଣତ କରିଦେବେ । ସେ ପ୍ରଥମେ ପାଦ ଦ୍ୱୟକୁ ଧରି ଚୁମ୍ବନ ଦେଇ କ୍ରମଶଃ ନୈମିଷ୍ୟାରଣ୍ୟ ଭିତରେ ପଶି ନିଷିଦ୍ଧ ଫଳ ଦୁଇଟିକୁ ଭକ୍ଷଣ କରିବେ ।

ସେ ତାଙ୍କ ପତ୍ନୀଙ୍କର ଦେହଟାକୁ କେବେ ଦେଖି ନଥିଲେ । କେତେଥର ପତ୍ନୀଙ୍କର ନଗ୍ନ ଦେହଟା ତାଙ୍କ ଦେହରେ ଜଡ଼ାଇ ଦେବାବେଳେ ସେ କେବଳ ପତ୍ନୀଙ୍କ ଆଖିକୁ ଚାହିଁ ରହୁଥିଲେ । ନାରୀର ନଗ୍ନ ଦେହ ଭିତରେ ଏତେ ସୁନ୍ଦରତା ପୂରି ରହିଛି ସେ କେବେ ତାହା ଅନୁଭବ କରି ନଥିଲେ । ଦେହରେ ଆବୃତ ହୋଇଥିବା ଅଙ୍ଗବାସକୁ ଛାଡ଼ିଦେଲେ ନାରୀର ଯୌବନ କିପରି ଅମୋଘତ କରେ । ସୁଧସ୍ତ ବ୍ୟସ୍ତ ଓ ବିବ୍ରତ ହୋଇ ଉଠୁଥିଲେ ।

ତାଙ୍କର ନିଶ୍ୱାସରୁ ଦୀର୍ଘଶ୍ୱାସ ବାରମ୍ବାର ବାହାରୁଥିଲା । ସେ ପାଦଠାରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁ ରହିଥିଲେ ସୁପ୍ରଭାଙ୍କ ଆଡ଼େ । ଯଦି ସେ ସୁପ୍ରଭାଙ୍କ ନଗ୍ନ ଶରୀରଟାକୁ ଭୋଗ କରନ୍ତି ଏବଂ ସୁପ୍ରଭା ପ୍ରତିରୋଧ କଲେ, ଚିତ୍କାର କଲେ ସେ କ'ଣ କରିବେ ହୋଟେଲରେ ଥିବା ଓ୍ୱାଚମ୍ୟାନ ଏବଂ ନିକଟରୁମ୍‌ରେ ଥିବା ଲୋକମାନେ ଆସି ତାଙ୍କୁ ଧରି ନେବେ ନିଶ୍ଚୟ ଏବଂ ରେପ୍ ବା ଆଟେମ୍ପଟେଡ୍ ରେପ୍ ଅଭିଯୋଗରେ ତାଙ୍କୁ ଦଣ୍ଡ ହେବ ।

ଯଦି ତାଙ୍କୁ ସଶ୍ରମ କାରାଦଣ୍ଡ ହୁଏ···।

କିଛି ସମୟ ସେ ଭାବୁଥିଲେ କ'ଣ ହୋଇପାରେ ପରିଣତି । ସୁପ୍ରଭା ତାଙ୍କର ପତ୍ନୀ ବା ପ୍ରେମିକା ନୁହନ୍ତି । ସେ ତାଙ୍କୁ ଭଲ ପାଆନ୍ତି ଅବଶ୍ୟ । ସେ ରେପ୍ କରି ପାରିବେ ନାହିଁ । ମାତ୍ର ତାଙ୍କ ସହିତ ପ୍ରେମାଳାପ କରିବେ । ତାଙ୍କର ନଗ୍ନ ଦେହଟାକୁ କୁଣ୍ଢାଇ ଧରିବେ । ସୁପ୍ରଭା ଅରାଜି ହେବେ ନାହିଁ ନିଶ୍ଚୟ । ବିବାହ ପୂର୍ବରୁ ସେ ବୈବାହିକ ଜୀବନର ସ୍ୱାଦ ଚାଖିବେ । ସୁପ୍ରଭାଙ୍କର ବୋଧହୁଏ ତାହା ହିଁ ଇଚ୍ଛା । ତାଙ୍କ ସହିତ ଗୋଟିଏ କୋଠରୀ ଭିତରେ ସେମାନେ ବନ୍ଦୀ ହୋଇଯିବେ, ଏକ ହୃଦୟ ଗୋଟିଏ ଶରୀରରେ ଲୀନ ହେବେ ।

କାହିଁ ସେପରି କୌଣସି ଭାବନା ପ୍ରକାଶ କରୁନଥିଲେ ସୁପ୍ରଭା ଆସିବା ବେଳେ । ସୁଧସ୍ତଙ୍କର ସମସ୍ତ କାମ କରୁଥିଲେ ଅତି ନିଃସଙ୍କୋଚ ଭାବରେ । ଯଦି ତାଙ୍କର ଏ ପ୍ରକାର ଭାବନା ଥାଆନ୍ତା, ତେବେ ଦୀର୍ଘ ଏତେ ବର୍ଷର ତାହା ପରିଚୟ ଜଣାଶୁଣା ଭିତରେ ସେ କେବେ ହୁଏତ କହି ପାରିଥାନ୍ତେ, ଭାବନାରେ ପ୍ରକାଶ କରି ପାରିଥାନ୍ତେ ।

ସୁଦତ୍ତ ବ୍ୟସ୍ତ ହୋଇ ଉଠିଲେ । ଲକ୍ଷ୍ୟ କରୁଥିଲେ ପାଦ ଦୁଇଟିକୁ । କୌଣସି ଠାରେ ଟିକଏ ହେଲେ ମସୃଣ ରେଖାଟିଏ ଦେଖିବାକୁ ପାଇଲେ ନାହିଁ । ପଦ୍ମଫୁଲର ପାଖୁଡ଼ା ପରି ଈଷତ୍ ନାଲ । ଚୁମ୍ବନଟିଏ ଆଙ୍କି ଦେବାକୁ ପୁନର୍ବାର ଆଗେଇ ଗଲେ ।

କଡ଼ ଲେଉଟାଇଲେ ସୁପ୍ରଭା । ନାଇଟ୍ ଗାଉନ୍‌ଟା ଟେକ ହୋଇଗଲା ଆଣ୍ଠୁ ଉପରକୁ ।

ସୁଦତ୍ତ ଚାହିଁ ରହିଥିଲେ ଶୋଇ ରହିଥିବା ସୁପ୍ରଭାଙ୍କ ଆଡ଼େ । ମନ ଭିତରୁ ଜାନ୍ତବ ରାକ୍ଷସଟା ହେଣ୍ଟାଲ ରଡ଼ି ଛାଡ଼ୁଥିଲା । ବହୁଦିନରୁ କ୍ଷୁଧିତ ସେ । ସମସ୍ତ କ୍ଷୁଧାର ଅବସାନ ଅଙ୍କ ଯେମିତି ହେବ । ବିଳମ୍ବ କରାଯାଇ ନପାରେ । ପୁଣି ଆଗେଇଲେ ସୁଦତ୍ତ । କେହି ଯେପରି କହୁଥିଲା, "ସୁଦତ୍ତ ! ନାରୀ ହେଉଛି ଭୋଗ୍ୟା । ତୁମେ ଚାହିଁଛ କାହିଁକି ? ହାତ ପାଆନ୍ତାରେ ଏତେ ସୁନ୍ଦର ବର୍ଣ୍ଣାଢ୍ୟ ଫୁଲକୁ ଉପଭୋଗ କର । ହାତରେ ଧରି ଦଳି ମକଚି ବିନଷ୍ଟ କର । ଫୁଲକୁ କେବଳ ଦେଖିବା ନୁହେଁ ଉପଭୋଗ କରିବା । ମଦମତ୍ତ ହସ୍ତୀପରି ପଦ୍ମବନକୁ ତୁମେ ଧ୍ୱଂସ କର ।"

ସୁଦତ୍ତ କ୍ରମଶଃ ନିଜର ସ୍ୱଭାବକୁ ହରାଇ ବସୁଥିଲେ । ତାଙ୍କ ମନରେ ଆଦିମ-ମାନବର କ୍ଷୁଧା । ଯୁଗ ଯୁଗର ସେ କ୍ଷୁଧା ଯେପରି ତାଙ୍କୁ ସର୍ବାଙ୍ଗରେ କବଳିତ କରିଛି । ସେ ଅନୁଭବ କରୁଛନ୍ତି ନିଜର ପଶୁ ହରାଇ ବସିବା ପରି ।

ସେ କ୍ରମଶଃ ଆଗେଇଲେ ସୁପ୍ରଭାଙ୍କର କୋମଳ ଶରୀରଟାକୁ ଯାବୋଡ଼ି ଧରିବା ପାଇଁ ।

ପଦ୍ମପତ୍ର ସଦୃଶ ତାଙ୍କର ପାଦ ଯୁଗଳରେ ଆଙ୍କି ଦେବାକୁ ଚୁମ୍ବନ । ସ୍ଫୁରିତ ବକ୍ଷୋଜରୁ ଆହରଣ କରିବାକୁ ମଧୁ ଏବଂ ସମୁଦ୍ରର ଢେଉ ଏଡ଼ି ପଶିଯିବାକୁ ତାଙ୍କର ନିଗୂଢ଼ ଅଞ୍ଚଳମାନଙ୍କରେ ।

ସୁଦତ୍ତ କ୍ରମଶଃ ନିକଟତର ହେଲେ । ଶ୍ୱାସକ୍ରିୟା ଦ୍ରୁତ ଗତିରେ ଦୌଡ଼ିବାକୁ ଆରମ୍ଭ କଲା । ତାଙ୍କର ଗୁଡ଼ ପଡ଼ିଲା ଓ ଉଠିଲା । ଘନଘନ ନିଶ୍ୱାସରେ ସେ ମୁହ୍ୟମାନ ହୋଇ ଉଠିଲେ ।

ସେ ଆସ୍ତେ ଆସ୍ତେ ଅତି ନିକଟତର ହେଲେ ଶୋଇଥିବା ସୁପ୍ରଭାଙ୍କ ଆଡ଼େ । ତାଙ୍କ ଓଷ୍ଠାଧାରରେ ଆଙ୍କିବାକୁ ଚୁମାଟିଏ । ଓଠରେ ଓଠ ମିଳାଇ ଦେଇ ଅନୁଭବ କରିବାକୁ ଅମୃତର ସ୍ୱାଦ । ହାତ ଦୁଇଟାକୁ ବିଛଣାର ଖଟ ବାଡ଼ରେ ଡ଼େରି ଦେଇ ତାଙ୍କ ଓଠ ଆଡ଼କୁ ଚାହିଁ ନିଜ ଓଠକୁ କ୍ରମଶଃ ଆଗେଇ ନେଲେ । ପ୍ରସ୍ଫୁଟିତ ପଦ୍ମଫୁଲର ସୌରଭରେ ସେ ଅଭିଭୂତ ହୋଇ ଉଠୁଥିଲେ । ତାଙ୍କ ନାସା ଦ୍ୱୟର ରନ୍ଧ୍ରରେ ସେ

ଆଘାତ କରୁଥିଲେ ପଦ୍ମର ସୁବାସ । ସେ ଓାନ୍ତ୍ରଗନ୍ଧ ତାଙ୍କୁ ପୁଣି ଆଗକୁ ଟାଣୁଥିଲା । ସେ ନିଜର ବାହ୍ୟଚେତନାକୁ ଭୁଲି ଯାଉଥିଲେ ।

ତାଙ୍କର ଦୃଷ୍ଟି ଊର୍ଦ୍ଧ୍ୱମୁଖୀ ହେଲା । ସେ ନିଜର ଚକ୍ଷୁଦ୍ୱୟକୁ ଉପରକୁ ଟେକି ତାଙ୍କୁ ଶେଷଥର ପାଇଁ ନିରୀକ୍ଷଣ କରିବାକୁ ଚେଷ୍ଟା କଲେ । ସୁପ୍ରଭାଙ୍କର କପାଳକୁ ଲକ୍ଷ୍ୟକରି ଚକ୍ଷୁଦ୍ୱୟ ଉପରକୁ ଉପରକୁ ଉଠି ଚାଲିଥିଲେ ।

ହଠାତ୍ ଆଖି ଦୁଇଟି ଲାଗି ରହିଲା କାନ୍ଥରେ ଟଙ୍ଗା ହୋଇଥିବା କୌଣସି ଗୋଟିଏ ଫଟୋରେ । ମା, କାଳୀଙ୍କର ଏକ ଘୂର୍ଣ୍ଣାଙ୍ଗ ନଗ୍ନ ଅବୟବ ତଳେ ଶାନ୍ତ ଓ ସମାହିତ ଚରଣରେ ଦଣ୍ଡାୟମାନ ଶ୍ରୀ ରାମକୃଷ୍ଣ । ସୁଦୀପ୍ତଙ୍କର ଚକ୍ଷୁ ନିବଦ୍ଧହୋଇ ରହିଗଲା ସେଠାରେ ।

ସେ ସେହି ନିର୍ଜୀବ ଫଟୋ ଭିତରେ ଏକ ସଜୀବତା ଅନୁଭବ କଲେ । ଆଦିମ ମାନବର ଦାନବ ପ୍ରବୃତ୍ତିକୁ ଧ୍ୱଂସ ବିଧ୍ୱଂସ କରିବା ପାଇଁ ଜଗଦମ୍ବାଙ୍କର ଏ ରୂପରେ ସେ ଭୟଭୀତ ଓ ତ୍ରସ୍ତ ହୋଇ ଉଠୁଥିଲେ । ଲେଲିହାନ ଜିହ୍ୱାକୁ ବଢ଼ାଇ ଦେଇ ତାଙ୍କ ଦେହରୁ ସମସ୍ତ ଶକ୍ତିକୁ ଶୋଷି ନେବାପାଇଁ ଯେପରି ମା କାଳୀଙ୍କର ସଖୀ-ସହଚରୀ-ମାନେ ଆଦେଶ ଅପେକ୍ଷାରେ ରହିଥିଲେ ।

ସୁଦୀପ୍ତ ମାନବ ଚେତନାକୁ ଉପଲବ୍ଧି କଲେ । ସେ ଉଠି ଛିଡ଼ାହୋଇ ପଡ଼ିଲେ ସେହି ଫଟୋଟି ପାଖରେ । ଆଖିରୁ ଧାର ଧାର ଲୁହ ବହି ଚାଲିଥିଲା । 'ମା' 'ମା' କହି ଆକୁଳ କ୍ରନ୍ଦନ କରିବାକୁ ଲାଗିଗଲେ । ବାରମ୍ବାର ଭୂମିରେ ମୁଣ୍ଡକୁ କଚାଡ଼ି ନିଜକୁ ଧିକ୍କାର କରିବାକୁ ଲାଗିଲେ । କାନ୍ଥଘଣ୍ଟା ପାଞ୍ଚଟା ବାଜିବାର ସୂଚନା ଦେଉଥିଲା । ଝରକାଦେଇ ଦମକାଏ ଥଣ୍ଡା ହାଓ୍ୱା ପଶିଆସିଲା ରୁମ୍ ଭିତରକୁ । ପାଖ ମସ୍‌ଜିଦରୁ 'ଅଲ୍ଲା ହୋ ଅକବର' ଧ୍ୱନି ସେହି ଥଣ୍ଡା ହାଓ୍ୱା ସାଙ୍ଗରେ ପଶି ଆସୁଥିଲା ।

ସୁଦୀପ୍ତ ନିର୍ନିମେଷ ନୟନରେ ଚାହିଁ ରହିଥିଲେ ସେହି ଫଟୋଟିକୁ । ଆଖି ଦୁଇଟିରୁ ବହି ଚାଲିଥିଲା ଦୁଇଧାର ଲୁହ ।

× × ×

କଡ଼ ଲେଉଟାଇଲେ ସୁପ୍ରଭା । ଆଖି ମଳି ମଳି ବିଛଣାରୁ ଉଠିଲେ । ସେ ନିଜକୁ ବହୁତ ଫୁର୍ତ୍ତି ଓ ଆନନ୍ଦ ଅନୁଭବ କରୁଥିଲେ । କବାଟ ଖୋଲି ସୁଦୀପ୍ତଙ୍କ ରୁମ୍‌କୁ ଆସି କବାଟଟିକୁ ପେଲି ଦେବାମାତ୍ରେ ତାହା ଖୋଲିଗଲା । ଅନତି ଦୂରରେ ସୁଦୀପ୍ତ ଠିଆ ହୋଇଥିବାର ଲକ୍ଷ୍ୟକରି 'ଗୁଡ୍‌ମର୍ଣ୍ଣିଂ' କହି ପଶିଗଲେ ଭିତରକୁ । ସୁଦୀପ୍ତ ସାଧାରଣ ସ୍ତରକୁ ଫେରି ଆସିଥିଲେ । ସୁପ୍ରଭାଙ୍କର 'ଗୁଡ୍‌ମର୍ଣ୍ଣିଂ'ର ପ୍ରତ୍ୟୁତ୍ତର ଦେଲେ ।

ହସି ହସି ଆଗେଇ ଆସିଲେ ସୁପ୍ରଭା । ବ୍ୟାଗରୁ ପେଷ୍ଟ ଓ ବ୍ରସ ବାହାର କରି ବଢ଼ାଇଦେଲେ ସୁଦୀପ୍ତଙ୍କ ହାତକୁ । 'ଆପଣଙ୍କ ମୁଣ୍ଡରେ କେତେ ଧୂଳି' ଏହା କହି ନିଜ ପଣତକାନିରେ ପୋଛି ପକାଇଲେ । କାଲି ରାତିରେ ଦେଖିଥିବା ଗୋଟିଏ ସ୍ୱପ୍ନକୁ ବଖାଣିଲେ ସୁଦୀପ୍ତଙ୍କୁ ।

'ବୁଝିଲେ ନା, ଗତକାଲି ରାତିରେ ନିଦଟା ଖୁବ ବଢ଼ିଆ ହେଲା । ଶୋଇଥିବା ବେଳେ ହଠାତ୍ ଭୋରୁ ଭୋରୁ ମୁଁ ଗୋଟିଏ ସ୍ୱପ୍ନ ଦେଖିଲି । ପୁଷ୍କରଣୀରେ ଏକ ସୁନ୍ଦର ପଦ୍ମଫୁଲ ଢଳଢଳ ହୋଇ ଚାହିଁ ରହିଥିଲା ଆକାଶରେ ପୂର୍ଣ୍ଣଚନ୍ଦ୍ରଙ୍କୁ । ହଠାତ୍ ଏକ କଳାମୋଟା ଭ୍ରମର ବାରମ୍ବାର ସେହି ପଦ୍ମଫୁଲ ଉପରେ ଉଡ଼ିବୁଲି ପଦ୍ମ ପାଖୁଡ଼ାକୁ ଛୁଇଁବାକୁ ଚେଷ୍ଟାକଲା । ମାତ୍ର ତା'ର ଶତଚେଷ୍ଟା ସତ୍ତ୍ୱେ ସେ ହେଲା ପରାଭୂତ ।' 'ନିଦଟା ଭାଙ୍ଗିଗଲା । ଖୁବ ମଜା ଲାଗୁଥିଲା ସେହି ସ୍ୱପ୍ନଟା । ଭ୍ରମରଟା କେତେ ଚେଷ୍ଟା କଲା ସତେ । ମାତ୍ର ପଦ୍ମଫୁଲକୁ ଛୁଇଁ ପାରିଲା ନାହିଁ ।' 'ବୁଝନ୍ତୁ ତ ଦେଖି, ଏହି ସ୍ୱପ୍ନର ଅର୍ଥ କ'ଣ ?'

ହୋଟେଲ ବୟ ଆସି ଚା' ଥୋଇଦେଲା । ସୁଦୀପ୍ତ ସୁପ୍ରଭାଙ୍କୁ ହସ ହସ ମୁହଁରେ ଚାହିଁ ସ୍ୱପ୍ନର ଉତ୍ତର ଖୋଜୁଛି କହି ବାଥ୍‌ରୁମ୍ ଭିତରେ ପଶିଗଲେ ।



# ଶିଳ୍ପୀ

ସପନପୁର ଗାଁରେ ଚହଳ ପଡ଼ି ଯାଇଥିଲା ଦିନାକେତେ ହେଲା । ଆଜି ସେହି ବହୁ ପ୍ରତୀକ୍ଷିତ ଦିନ । ଗାଁ ଯାକ ସଫାସୁତୁରା । ପ୍ରତ୍ୟେକ ଘର ଆଗରେ ସୁଶୋଭିତ ଆମ୍ବଡ଼ାଳ ଓ କଦଳୀ ଗଛ । ଚିତା ଓ ମୁରୁଜ । ଗାଁ ମୁଣ୍ଡ ଏକଣାରେ ହେଉଛି ବିରାଟ ପ୍ରଦର୍ଶନୀ ସ୍ଥାପତ୍ୟ, କଳା ଓ ସଂସ୍କୃତିର । ପଦନ ମହାରଣାର ଆଖିକୁ ନିଦ ନାହିଁ । ଏତେଦିନ ପରେ ତାର ସ୍ୱପ୍ନ ସଫଳ ହେବାକୁ ଯାଉଛି । କେତେ ପରିଶ୍ରମ, କେତେ ଅନିଦ୍ରା ରଜନୀ । ନିହାଣ ମୁନ୍ହରେ କାରୁକାର୍ଯ୍ୟର ସୂକ୍ଷ୍ମ କାମ କରି ଅଣ୍ଟା ତା'ର ନଇଁ ପଡ଼ିଲାଣି । ଯୁବାବସ୍ଥାର ସ୍ୱପ୍ନ ସତରେ କ'ଣ ତାର ସଫଳ ହେବ । ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଆସିବେ ଏହି ପ୍ରଦର୍ଶନୀ ଦେଖିବାକୁ । ତା'ରି ହାତକାମ ଏ ସବୁ । ପେଟକୁ ଦାନା ପିଠିକୁ କନା ବଦଳରେ ସେ ଗଢ଼ିଛି ଏ ମୂର୍ତ୍ତିଗୁଡ଼ିକ । ଓଡ଼ିଆ ପୁଅର ଯଶ ହାତ ରଖିବାକୁ ହିଁ ଜୀବନର ତା'ର ଶପଥ । ସେ ଶପଥର ଆଗ୍ନେୟ ସ୍ଫୁଲିଙ୍ଗରେ ସେ କ୍ଷତବିକ୍ଷତ ହୋଇ ଯାଇନାହିଁ । କଳା ମୁଗୁନି ପଥରଠାରୁ ନିଜକୁ କରିଛି ଅତି ଦୃଢ଼ । ସଫଳତା ବିଫଳତା ତା' ନିକଟରେ ହୋଇଛି ମୂଲ୍ୟହୀନ । ସେ ଆଗକୁ ମାଡ଼ି ଚାଲିଛି । ତା'ର ଆଜି ଶୁଭଦିନର ମାଙ୍ଗଳିକ ଶଙ୍ଖ ଫୁଙ୍କିବାକୁ ରାଜ୍ୟର ସର୍ବୋଚ୍ଚ ଶାସନକର୍ତ୍ତା ବିଦ୍ୟମାନ ।

ହୋ ହଲ୍ଲା, ହଇଚଇ । ଗାଡ଼ି ଆସିଗଲା । ବହୁଦୂରରୁ ଗାଡ଼ି ଗୁଡ଼ିକର ପେଁ ପାଁ ଶବ୍ଦରେ ମୁଖରିତ ହୋଇ ଉଠୁଥିଲା ପଲ୍ଲୀଗ୍ରାମ ସପନପୁର । ଗାଡ଼ି ପଛେ ପଛେ ଦୌଡ଼ୁଥିଲେ ଲଙ୍ଗଳା ପିଲା ଗୁଡ଼ାକ । ପୁଲିସ୍‌ର ହୁଇସିଲ୍ ଶବ୍ଦ—ଆଡ଼ହୁଅ, ଆଡ଼ହୁଅ ପାଟି ଭିତରେ ଗାଡ଼ି ଲାଗିଗଲା ପ୍ରଦର୍ଶନୀ ମଣ୍ଡପ ନିକଟରେ ।

ଜାଜ୍ୱଲ୍ୟବ୍ୟକ୍ତିତ୍ୱରେ ଉଜ୍ଜ୍ୱଳମାନ ଦୀପ୍ତିମନ୍ତ ସର୍ବୋଚ୍ଚକର୍ତ୍ତା ଓହ୍ଲାଇ ପଡ଼ିଲେ ଶଙ୍ଖ ହୁଳହୁଳି ଧ୍ୱନିରେ ପ୍ରତିଧ୍ୱନିତ ହେଲା ସପନପୁରର ସେହି ଏକଣା ମନ୍ଦିର ପ୍ରାଙ୍ଗଣ· ସର୍ବୋଚ୍ଚକର୍ତ୍ତାଙ୍କ ପଛେ ପଛେ ସଂସ୍କୃତିକୁ ବୋହି ଚାଲୁଥିବା ଉଚ୍ଚ ପଦାଧିକାରୀଗଣ

ସ୍କନ୍ଧରେ ଶଢ଼ସିଂହର ମର୍ଦ୍ଦମ, ଉଜ୍ଜଳ ଧବଳ ପୋଷାକରେ ଆଚ୍ଛାଦିତ ସମସ୍ତ ଶରୀର କମ୍ପନ-ସୃଷ୍ଟି କରୁଥିଲା ପ୍ରତ୍ୟେକ ଦର୍ଶକମାନଙ୍କ ହୃଦୟରେ ।

ନାଲି ଫିତାକୁ ତୀକ୍ଷ୍ଣଧାରଯୁକ୍ତ କଇଞ୍ଚି ଦ୍ୱାରା ଛେଦନ କରି ଉଦ୍‌ଘାଟନ୍ କଲେ ପ୍ରଦର୍ଶନୀ ମଣ୍ଡପ । ସମସ୍ତଙ୍କୁ ମାଲ୍ୟେଟି ନେଲେ ପଦନ ମହାରଣା । ମଙ୍ଗଳାଷ୍ଟକ ବୋଲିବାକୁ ଆରମ୍ଭ କରି ଦେଇଥିଲେ ମଧୁ ମିଶ୍ର । ଗେଣ୍ଡୁ ଫୁଲର ସୁଶୋଭିତ ମାଳା ଧାରଣ କରି ଉପସ୍ଥିତ ସମବେତ ଜନତାକୁ ଉଦ୍‌ବୋଧନ ଦେଇ ରାଜ୍ୟର ମୁଖ୍ୟମନ୍ତ୍ରୀ ଦେଶ ଜାତିର ଜୀବନ ପ୍ରବାହରେ କଳା ଓ ଭାସ୍କର୍ଯ୍ୟର ଗୁରୁତ୍ୱ ସମ୍ପର୍କରେ ପ୍ରାଞ୍ଜଳ ଭାବରେ ବୁଝାଇ କପରି ତାହାର ଉନ୍ନତି ପାଇଁ ସେ ଚେଷ୍ଟିତ ତାହା ବର୍ଣ୍ଣନା କଲେ । କରତାଳିରେ ଫାଟି ପଡ଼ୁଥିଲା ସପନପୁର । ଘନ ଘନ କରତାଳି । କେବଳ କରତାଳି ।

ଗୋଟିକ ପରେ ଗୋଟିଏ ମଣ୍ଡପ । ପଦନ ମହାରଣା ହାତଥଙ୍କା ନେଇ ଚାଲିଲେ । ନିର୍ମାଣ ମୁନରେ ମୁଗୁନି ପଥରରେ ଖୋଦିତ ଭାସ୍କର୍ଯ୍ୟରେ ମୁଗ୍ଧ ହୋଇ ଗୋଟିକ ପରେ ଗୋଟିଏ କିଣି ନେବାକୁ ନିର୍ଦ୍ଦେଶ ଦେଇଥିଲେ ବିଶେଷ ନିର୍ଦ୍ଦେଶକଙ୍କୁ । ପଦନ କାନ୍ଧରେ ହାତପକାଇ ଏ ଜାତିର ଗୌରବ ବୋଲି ବର୍ଣ୍ଣନା କରିଥିଲେ । କାନ୍ଧରୁ କାଢ଼ି ରେଶମୀ ଚଦରକୁ ବେଢ଼ାଇ ଦେଇଥିଲେ ପଦନ ଦେହରେ । ପଦନ ହୋଇଥିଲା କୃତ କୃତ । ବାଛୁ ବାଛୁ ବସ୍ତୁ ବସ୍ତୁ ମୂର୍ତ୍ତିମାନ ଗାଡ଼ି ଉପରେ ଲଦା ହୋଇଥିଲା ।

ମୁଗ୍ଧ ନୟନରେ ପଦନ ଚାହିଁ ରହିଥିଲା ଗାଡ଼ିମାନଙ୍କର ପ୍ରତ୍ୟାବର୍ତ୍ତନର ପଥକୁ । ଆଶା ତା'ର ପୂରଣ ହୋଇଛି । ହଜାର ହଜାର କରି କେତେ ହଜାର ଟଙ୍କାର ସେ ହେବ ମାଲିକ । ସପନପୁର ଗାଁରେ ଗଢ଼ି ଉଠିବ ମହାରଣା ମ୍ୟୁଜିୟମ୍ ।

× × × ×

ପ୍ରତ୍ୟେକ ଦିନ ଦୌଡ଼ୁଥିଲା ସେ ଡାକ ଘରକୁ । ଚିଠି ଖଣ୍ଡିଏ ଆସିବ ତା' ପାଖକୁ ଡ୍ରାଫଟ୍‌କୁ ନେଇ । ଏଇମିତି କେତେ ଦିନ, ମାସ, ବର୍ଷ ... ବର୍ଷ ପରେ ବର୍ଷ ।

× × ×

"ହଇଓ ଶୁଣିଲନି, ପଦନ ମହାରଣା ବୃଚାଟା ମରିଗଲା", ପାଟି କରି କରି ବାଡ଼ି ଆଡ଼କୁ ପଶିଗଲେ ମଧୁ ମିଶ୍ରଙ୍କ ସ୍ତ୍ରୀ "ଶୁଣିଛନି : ପଦନ ମହାରଣା ମରିଗଲା । ରକ୍ଷା ପାଇଲା ମଣିଷଟା । ବହୁ ହନ୍ତସନ୍ତ ହେଉଥିଲା ଏକା ଏକା ।"

ମଧୁ ମିଶ୍ରେ ଭିତରରେ ମଡ଼ିଚା କାନରୁ ବାହାରକରି ଚାଳିଟାକୁ ହାତରେ ଧରି କଣ୍ଠ ଭିଡ଼ୁ ଭିଡ଼ୁ ପଚାରିଲେ, "କିଏ ମରିଗଲା ?"

"ସେଇ ତୁମ ପଦନ ମହାରଣା ମ।" ଟାଳଟା ଠକ୍ କରି ଖସି ପଡ଼ିଲା ମଧୁମିଶ୍ରଙ୍କ ହାତରୁ ।

"ପଦନ ମରିଗଲା ? କ'ଣ ତୁମେ କହୁଛ ? ଏ କଥା କ'ଣ ସତ ?"

"ପରୁଛ ନା ତୁମ ପୁଅକୁ । ମୋ' କଥାକୁ କାହିଁକି ସତ ମଣିବ ? ଯାଏଲେ ମୋର ଏ ନିଆଁ ଲଗା ଟୋକାଟା ସକାଳୁ ସକାଳୁ ମନ୍ଦ ଖବର ଦେଲାଣି ଯେ...' ପଦନ ମରିଗଲା ? ଆଃ, ପଦନଟା ଗ୍ଲଲିଗଲା । ପଦନଟା ସେ ପୁରକୁ ଗ୍ଲଲିଗଲା ।" ମଧୁ ମିଶ୍ରଙ୍କ ପାଟିରୁ ବାରମ୍ବାର ଏହି କଥାଟା ଓଲଟ ପାଲଟ ହେବାକୁ ଲାଗିଲା । ଅଲନ୍ଧୁ ଲାଗିଥିବା ହାତ ବାଡ଼ିଟାକୁ ଧରି ଅଗକୁ ମାଡ଼ି ଗ୍ଲଲେ ସେ । ଗାଁ ଦାଣ୍ଡରେ ଗ୍ଲଲିଗଲାବେଳେ ବଡ଼ ପାଟିରେ କହି ଗ୍ଲଲିଥିଲେ, "ହଇରେ ଶୁଣିଲଣି, ପଦନ ଚ୍ଲଲିଗଲା । ଆମ ପଦନ ମ ! ଯାହାର ହାତିକାମ ଦେଖି ରାଜ୍ୟର ପଟ୍ଟୋଲକର୍ତ୍ତା ଖୁସି ହୋଇ ରେଶମୀ ଚଦର ଦେଇଥିଲେ—ସେଇ ପଦନ ଏ ପୁରରେ ନାହିଁ ।"

ସକାଳୁ ସକାଳୁ ସପନପୁର ଗାଁ ଦାଣ୍ଡଟା ହଇଚଇରେ ଉଚ୍ଛନ୍ନ ହୋଇଗଲା । କିଏ ପୋଖରୀ ତୁଠରେ ଝାଡ଼ା ବସିଥିଲା ନୋଟାଟା ଗ୍ଲଡ଼ିଦେଇ ଆସିଲା । କିଏ ଠାକୁର ପୂଜା ପାଇଁ ବସୁ ବସୁ ଅଧାରୁଷି ଉଠିପଡ଼ିଲା ।

ଯେମିତି ଗାଁଟା ଗୋଟେ ବିରାଟ ବ୍ୟକ୍ତିତ୍ୱକୁ ହରାଇଲା । ନୂଆ ନୂଆ ଆସିଥିବା ବୋହୂ ଭୁଆସୁଣୀମାନେ ଚୁପ୍‌ଚାପ୍ ହେଲେ ପୋଖରୀ ତୁଠରେ । "କିଏ ଲୋ ଏ ପଦନ ମହାରଣା, ମୋର ତ ଆସିବା ବର୍ଷେ ହେଲାଣି । କାହିଁ ମୁଁ ଏ ନା ଏ ଗାଁରେ ଶୁଣିନି । ବୁଢ଼ୀଟିଏ ବାହାର ପଡ଼ି କହିଲା, "ସେ ଟୋକା ଥିଲେ କ'ଣ ଜାଣି ନଥାନ୍ତୁ । ଏଇ ପୋଖରୀ ତୁଠରେ ପରି ଚୋର ଓଦା'ସର୍‌ସର୍ ଦେହକୁ ଅନାଇଥାନ୍ତା ।"

ଲଜେଇଗଲା ନୂଆ ବୋହୂଟା । ବୁଢ଼ୀଟାଏ ହେଲାଣି ଭେମା ମା । ହେଲେ କଥା କହିବ ଅସଣ୍ଡସଣ୍ଡ ।

"ପଦନ ମହାରଣା ମରିଗଲା ।" ସବୁରି ତୁଣ୍ଡରେ ସେଇ ଗୋଟିଏ କଥା । ପଦନ୍ ମହାରଣା ବୁଢ଼ାଟା ମରିଗଲା ।"

ସଦ୍ୟ ବାଣୀବିହାର ଫେରନ୍ତା ଇଂରାଜୀ ଅଧ୍ୟାପକ ହେବାର ବହୁ ସ୍ୱପ୍ନ ଦେଖୁଥିବା ଗଣେଶ୍ୱର ହଠାତ୍ କହି ଉଠିଲା, "ହ୍ୱାଟ୍ ହ୍ୟାପନ୍‌ଡ଼ । ପଦନ ମହାରଣା ଡାଏଡ଼ ।"

କେହି ବିଶ୍ୱାସ କରୁ ନ ଥିଲେ ମଧ୍ୟ ସମସ୍ତେ କହୁଥିଲେ ପଦନ ମହାରଣା ମରିଗଲା । ସପନପୁର ଗାଁର ଶେଷ ମୁଣ୍ଡରେ ସେ ଦିନ ସକାଳୁ ସକାଳୁ ବହୁ ଲୋକମାନେ ଏକାଠି ହେବାକୁ ଲାଗିଥିଲେ । ବୁଢ଼ା, ଟୋକା, ବୁଢ଼ୀ ଆଉ ଅଳ୍ପ ସଂଖ୍ୟକ ମଧ୍ୟ ବିସ୍ମୟ

ସ୍ତ୍ରୀ ଲୋକ । ପରସ୍ପର ମଧ୍ୟରେ ଭୁଣୁଭୁଣୁ । "ପଦ୍ମ ମହାରଣା ମରିଗଲା । ଆଃ, ମଣିଷଟାଏ ଥିଲା ଏକା । ବୟସ ଗଡ଼ିଗଲାପରେ ଗୁଣ୍ଡେ ପିଲା ବାହାହେଲେ । ବାହା ନହୋଇଥିଲେ କ'ଣ କରିଥାନ୍ତା । କେତେଦିନ ବାହା ନହୋଇ ରହିଥାନ୍ତା । ଯୁବା ବୟସରେ ନିଜଠାରୁ ଗୋଟିଏ ଟୋକୀଟେ ବାହା ହୋଇଥିଲା ବୋଲି କହନ୍ତି । ମାତ୍ର ସେ ଟୋକୀଟା ତା' ପାଖରୁ ଚାଲିଗଲା । ଯେତେଦିନ ଥିଲା, ଟୋକୀଟା ପାଇଁ କେତେ ଦରଦ । ତା' ଲୁଗା ଫିନ୍ ଫିନ ଇସ୍ତ୍ରୀ ହେବ । ପାଖ ସହରକୁ ଯାଇ ହରେକ୍ ମାଲ ଆଣିବ ତା' ପାଇଁ । କେତେ ଥରେ ଦୁଇଜଣ ଯାକ ଯେତେବେଳେ ବାହାରନ୍ତି, ଗାଁ ସାରା ଲୋକେ ଚାହିଁଥାନ୍ତି ତାଙ୍କୁ । ମାତ୍ର ଦୁଇବର୍ଷ ନପୁରୁଣୁ ସେହି ସ୍ତ୍ରୀଟା ତାଙ୍କୁ ଛାଡ଼ି ଚାଲିଗଲା । କ'ଣ ଘଟିଲା ସେମାନଙ୍କ ଭିତରେ କେହି ଜାଣି ପାରିଲେ ନାହିଁ ।

ସେଇଥରକ ଗାଁରେ ନାମ ହୋଇଥିଲା—ଧର୍ମପଦ । ବହୁ ନେହୁରା କଲାରୁ ପଦ୍ମ ହୋଇଥିଲା ଧର୍ମପଦ । କ'ଣ ସେ ଦିନ ନଥିଲା । କୋଣାର୍କ ଦେଉଳ ଉପରେ ମଯୂର ଠୁକ୍ ଠୁକ୍ କରି ଯେତେବେଳେ ଦେଉଳ ଚୂଡ଼ାଟା ବସାଇଦେଲା ନେ-କରତାଳି-ଖୋଲ ମେଡ଼ାଲ ଉପରେ ମେଡ଼ାଲ୍ । ପୁଣି ଯେତେବେଳେ ବାରଶ ବଢ଼େଇଙ୍କର ମାନ ଗୌରବ ରକ୍ଷିବାକୁ ପାଇଁ ଦେଉଳ ଉପରୁ ସମୁଦ୍ରକୁ ଡେଇଁ ପଡ଼ିଲା, ସମସ୍ତେ କାନ୍ଦି ଉଠିଲେ । ଲୁହ ଧାରରେ ଗାଁ ଦାଣ୍ଡଟା କାଦୁଅ ହୋଇଗଲା । ରାଜ୍ୟର ସର୍ବୋଚ୍ଚ-କର୍ତ୍ତା ବସି ଦେଖିଥିଲେ ସେ ଦିନ ଏଇ ଗାଁରେ । ପଦ୍ମ ମହାରଣାକୁ କୁଣ୍ଢାଇ ପକାଇ ତା' ବେକରେ ଫୁଲମାଳ ଲମ୍ବାଇ ଦେଇ କହିଥିଲେ, "ତୁମେ କଳା, ସ୍ଥାପତ୍ୟ ଓ ସଂସ୍କୃତିର ଉତ୍ତମ ଦାୟାଦ ।"

ସେଇ ସ୍ତ୍ରୀ ଲୋକଟା ଚାଲିଗଲା ପରେ କେତେଦିନ ଏକା ଏକା କାଟିଥାନ୍ତା ସେ । ସାଥିଟିଏ ଦରକାର । ସେଇଥିପାଇଁ ବୁଣାଟାର ହାତଧରି ଘରକୁ ନେଇ ଆସିଥିଲା । ମାତ୍ର ଅଧାବୟସି ସେଇ ମାଇକିନିଆଁଟା ମଧ୍ୟ ଦୁଇ ତିନିବର୍ଷ ରହି ଚାଲିଗଲା ତା' ପାଖରୁ ।

ଆଶ୍ଚର୍ଯ୍ୟ କହନ୍ତି ଏଇଆକୁ । ପଦ୍ମ ମହାରଣା ଏଇମିତି ଏକା ଏକା ପଡ଼ି ମରିଗଲା । ଘର ଭିତରେ ପଡ଼ିଥିଲା ପଦ୍ମ ମହାରଣାର ମୃତ ଶରୀର । ଆଲୋଚନା ଚାଲିଥିଲା ତା' ସମ୍ପର୍କରେ ଦାଣ୍ଡ ଦୁଆର ମୁହଁରେ । ମଧୁ ମିଶ୍ରେ ବାଡ଼ିଟାକୁ ଧରି ବସି ପଡ଼ିଥିଲେ ପିଣ୍ଡାଟା ଉପରେ ଲଥ୍‌କରି । ଆଖି ଉଦାସ ଭାବରେ ଚାହିଁ ରହିଥିଲା ଆକାଶକୁ । ବୋଧହୁଏ କ'ଣ ମନେ ମନେ ଭାବୁଥିଲେ । ପଦ୍ମ ତାଙ୍କଠାରୁ ଢେର ବୟସର ଥିଲେ ବି ମଧୁ ମିଶ୍ରଙ୍କ ସହିତ ଭଲ ଭାବ ଥିଲା ବୋଲି ଲୋକେ ଜାଣନ୍ତି । କେବେ

କେବେ ମଧୁ ମିଶ୍ରଙ୍କୁ ପଦ୍ମନର ଦାଣ୍ଡ ବାରଣ୍ଡାରେ ଦେଖିବାକୁ ମିଳେ । ମଧୁ ମିଶ୍ର ବସିଛନ୍ତି—ଟୋକାମାନେ, ବୁଢ଼ାମାନେ ଟୁପ୍‌ଟାପ୍ ହେଉଛନ୍ତି ତା'ର ଦୁଆର ମୁହଁରେ । କାହା ମୁହଁରେ ପ୍ରଶଂସା—କଏ କରୁଛୁ କହ । କହୁଥିଲେ ପିନା ଶୁଣିଥାନ୍ତା ପଦନ । ହେଲେ ପଦନ ମହାରଣା ମରି ଶୋଇଛୁ ଘର ଭିତରେ ।

ଇଂରଜୀ ଅଧ୍ୟାପକ ହେବା ଜଣାରେ ଚଣ୍ଡଥିବା ଗଣେଶ୍ୱର ହଠାତ୍ ଗୋଟେ ଚଉକାର କଲପରି ବଡ଼ ପାଟିରେ କହିବାକୁ ଆରମ୍ଭ କଲା, "ୟୁ ନୋ ଫ୍ରେଣ୍ଡ୍‌ସ୍, ମିଷ୍ଟର ପଦନ ମହାରଣା ଓ୍ୱାଜ୍ ଏ···।" "ଆବେ ଗଣେଶ୍ୱର, ତୋ ଇଂରଜୀ ବୁଝିବାକୁ ଆମର କ'ଣ ଆଉ ବୟସ ଅଛି । କ'ଣ କହୁଛୁ ଓଡ଼ିଆରେ କହୁନୁ ।" ସପନା ମା ବୁଢ଼ୀର କଥାରେ ଦଣ୍ଡେ ଶଙ୍କି ଗଲା ଗଣେଶ୍ୱର ।

ସତେତ, ଗାରେ ଇଂରଜୀରେ କହିବା ତା'ର ନହାତ ବୋକାମୀ । ଓଡ଼ିଆରେ ଆରମ୍ଭ କରିବାକୁ ଯାଇ ସେ କହିଲା, "ଭାଇ ଓ ଭଉଣୀମାନେ । ଆପଣମାନେ···" ହୋ, ହୋ ହୋଇ ହସି ଉଠିଲେ ସମସ୍ତେ । ସଧୁଆ ମା ବୁଢ଼ୀ ପାକୁଆ ପାଟିଟାକୁ ମେଲା କରି ଦେଇ ଛୁରୁଲେଇ ହେଲାଭଳି କହିଲା, ଆବେ ହେ ଗଣିଆ, କ'ଣ କହୁଛୁ ଭାଇ ଓ ଭଉଣୀମାନେ । ଆବେ, ମୁଁ ତୋର ଭଉଣୀ ହେବି । ଗାଲ ଚିପିଲେ ଟୋକାର ଦୁଧ ବାହାରିବ, କ'ଣ କହୁଛୁ ନା ମୁଁ ତା ଭଉଣୀ । ହଇଓ ପଧାନପୁଅ, ସାହୁପୁଅ, ଶୁଣୁଛଟି ଆଜକାଲିକା ଟୋକାଙ୍କ କଥା । ଏ ଗଣିଆ ମେଞ୍ଚଡ଼ ଟୋକାଟା କହୁଛି କ'ଣ ନା ଭାଇ ଭଉଣୀମାନେ ।

ସଧୁଆ ମା ବୁଢ଼ୀ କଥାରେ ଠୋ ଠୋ ହସି ଉଠିଲେ ସମସ୍ତେ । ଛି, ଛି,ରେ ଫାଟି ପଡ଼ିଲା ସେଇ ମଜାକ । ଗଣେଶ୍ୱରର ଆଖିରୁ ଜୁଳୁ ଜୁଳୁଆ ଧୋକ ବାହାରିଗଲା ଯେପରି—ଚୁପ୍ ହୋଇ ପକେଟରୁ ସିଗାରେଟ୍‌ଟେ ବାହାର କରି ନିଆଁ ଧରାଇଲା ।

ପଦନ ମହାରଣାର ମଲା ଶରୀରଟା ଘର ଭିତରେ ପଡ଼ି ରହିଥିଲା ସେ ପର୍ଯ୍ୟନ୍ତ ।

ମହନ ମିଶ୍ର ତତା ଚୈତନ୍ୟ ହୋଇ 'ଗୋବନ୍ଦ' 'ଗୋବନ୍ଦ' ହୋଇ ଯୋଗ ବାଟରେ ଯାଉଥିଲେ ଶିବ ମନ୍ଦିରକୁ । ତାଙ୍କ ଗୋଡ଼ ସେଇଠାରେ ଅଟକି ଗଲା । "ପଦନ ଚାଲିଗଲା ନା, ଆଉ ରହିଛି କ'ଣ ଯେ ପିଲମାନେ, ତାର ଶବ ସତ୍କାର କର । ଦେବ ମନ୍ଦିର ପାଖରେ ଅପବିତ୍ର ଦେହରଟା ପଡ଼ିଲେ ଦେବପୂଜା ହେବନି । ତୁମେମାନେ ଏକାମ ସାରିଲେ ମୁଁ ମହାଦେବଙ୍କର ପୂଜାକାର୍ଯ୍ୟ କରିବି । ଏ ପିଲମାନେ, ତୁମେ କ'ଣ ଜାଣିଛ—ପଦନ ମହାରଣା ଥିଲା ପଣ୍ଡିତ । ଜାତି ଗୋଟିଏ ଜଣା ନଥିବା ରାଣ୍ଡଟାକୁ ଘରି

ରଖିବା ଫଳରେ ସିନା ତାର କାମ୍ଭାଟା ଅପଭଞ୍ଜ ହୋଇଗଲା । ନଚେତ୍ ବେଦ, ବେଦାନ୍ତ ଉପରେ କି ଜ୍ଞାନ । କଥା କଥାରେ ରାମକୃଷ୍ଣ, ବିବେକାନନ୍ଦ, ଖ୍ରୀଷ୍ଟ, ବୁଦ୍ଧଙ୍କ ବାଣୀ କିମ୍ବା ଭାଗବତରୁ ଉଦ୍ଧୃତ କରୁଥିଲା । ଥରେ ଗାଁରେ ଯୁବଉତ୍ସବ ପାଳନ ହୋଇଥିଲା । ତାକୁ ପିଲାମାନେ ଲଗାଇଲେ ସେ ଭାଷଣ ଦେବ ମୁଖ୍ୟବକ୍ତା ହୋଇ । କ'ଣ ସେଦିନ ନକହିଲା ସେ । ଗୀତା, କୋରାନ, ବାଇବେଲ୍‌ରୁ ଉଦ୍ଧୃତ କରି ଜଗନ୍ନାଥ ଦାସଙ୍କର ଭାଗବତଠାରୁ ବ୍ୟାସଙ୍କର ମହାଭାରତର ସବୁକିଛି ବ୍ୟାଖ୍ୟାନ କରି ଯେଉଁ ପ୍ରାଞ୍ଜଳ ଭାବରେ ବୁଝାଇ ଥିଲା । ସେ ଦିନ ଯେ ଶୁଣିଛି ସେ ଜୀବନରେ କେବେ ଭୁଲି ପାରିବ ନାହିଁ । "ପଦନ ମହାରଣାଟା ବଡ଼ ପଣ୍ଡିତ ଥିଲାରେ ସତେ । ତା ଶବଟାକୁ ଯଥାବିଧି ସତ୍କାର କର । ଶରୀରଟା ଅପବିତ୍ର ହୋଇ ଯାଇଛି ରଣ୍ଡଟାକୁ ରଖି । ଧର୍ମ ମ, ଏ ଦେହ ବି ତାହାର । ଗୀତାରେ ପରା କୁହାଯାଇଛି, "ବ୍ୟାହାସି ଜୀର୍ଣ୍ଣାନି ଯଥା ବିହାୟ...।" ହରି ଓଁ । "ମୁଁ ସ୍କୁଲରେ ପିଲେ ।" ମହନ୍ତ ମିଶ୍ର ଆଡ଼କୁ ମାଡ଼ି ଗ୍ଲୁଲିଗଲା ।

ପଦନ ମହାରଣା ଶବଟା ନିର୍ଯାତ ଚକ୍ରକାନ୍ତ ହୋଇ ସେଇ ଲୁଆଣିଆଁ ସ୍କୁଲଘରଟାରେ ପଡ଼ି ରହିଛି । ହୋ ହୁଲ୍ଲା, ଟୁପ୍ ଟାପ୍, ଭୁଟ୍‌ଭାଟ୍ ତାର ବାଣ୍ଡ ବାରଣ୍ଡାରେ ।

ପାଞ୍ଚି ଖୋଲିଲେ ମଧ୍ୟ ମିଶ୍ରେ । ମଢ଼ା ଉଠାଇବାକୁ ହେବ । ପଦନ ମହାରଣାର କେହି ନାହାନ୍ତି ତା'ର ବଂଶଧର ବୋଲି । ତା ବୋଲି ଶବଟା ତ ପଡ଼ି ରହିନ୍ତା ନାହିଁ ଗା ମୁଣ୍ଡର ଏକଣା ସ୍କୁଲଘରଠାରେ । ପଦନ ମହାରଣା ଥିଲା ଏକ ବିରାଟ ବ୍ୟକ୍ତିତ୍ୱ । ବଣମଲ୍ଲି ସିନା ଝିଙ୍ଗ ପଡ଼ିଲା ଏହି ସପନପୁର ଗାଁରେ । ଲୋକେ ଖାଲି ନିନ୍ଦା କରି ଶିଖିଛନ୍ତି । ଶରୀର ପାଇଁ ନାରୀ ସାହଚର୍ଯ ହେତୁ କାହାକୁ କେତେବେଳେ ଆଣି ରଖିଥିଲା ବୋଲି ପଦନ କ'ଣ ଅପବିତ୍ର ହୋଇଗଲା । ଭାରତୀୟ ସଂସ୍କୃତିର ପୃଷ୍ଠପୋଷକ ଥିଲା ସେ । ସାଧନାରେ ସିଦ୍ଧିଲାଭ କରିଥିଲା । ତୁମେମାନେ କ'ଣ ଜାଣିଛ ତାକୁ । ଦିନ ଦିନ, ମାସ ମାସ, ବର୍ଷ ବର୍ଷ ଧରି ସେ ଏଇ ଭଙ୍ଗା କୁଡ଼ିଆ ଘର ଭିତରେ ଆଙ୍କୁଥିଲା ଛବି—କେତେ ସୁନ୍ଦର ଚିତ୍ର । ପଥର ଦେହରେ ନିହାଣ ମୁନରେ ଖୋଳୁଥିଲା କେତେ କାରୁକାର୍ଯ୍ୟ । ନ ହେଲେ କ'ଣ ଜୀବନ୍ତ ଧର୍ମପଦ ପରି ସେ ନାଟକରେ ଅଭିନୟ କରି ପାରନ୍ତା । ଏଇ ଆଖି ମୋର ଦେଖିଛି । କେତେ ବାବୁ ଭାୟା ଆସୁଥିଲେ, ତାର ଏଇ କୋଠରୀକୁ । ଗଲାବେଳେ ମଳିଚ ଗୁଡ଼ା ହୋଇଥିବା, ବିଭିନ୍ନ ଭାବରେ ପ୍ୟାକେଟ୍ ହୋଇଥିବା ବଡ଼ ବଡ଼ ପଦାର୍ଥମାନ । ଓଡ଼ିଶାର କଳା, ସ୍ଥାପତ୍ୟକୁ କପରି ସାଇତି ରଖିବାକୁ ହେବ, ତାର ଅନବରତ ଚିନ୍ତା ଥିଲା । ଆରେ ପଦନଟା ମରିଗଲା ବୋଲି ତୁମେ ତାର ଅପନିନ୍ଦା କରିବ । ତା ପରି ଜନେ ନା ଜନେ ଖେଳିସିବ ବୁଝିଥାହେ,

କ'ଣ ଜାଣିଛ ତାକୁ । ମହାରଣା ବଂଶର ଗୌରବମୟ ଅଧ୍ୟାୟ ଭିତରେ ସେ ଗଣ୍ଡ ବାହାହୋଇ ଘରକୁ ଅଣିଥିଲା । ତୁମର ସେ ସାହସ ଅଛି । ଫସ୍ତାର, ସମାଜ ଫସ୍ତାର । ସମାଜର ବାବୁମାନେ ତାକୁ ଠକି ଦେଲେ । ତାର ଅପଯଶ ରଟନା କଲେ । ମାତ୍ର ତାଙ୍କର ବଡ଼ ବଡ଼ ବାଂଲୋ ମାନଙ୍କରେ, ମ୍ୟୁଜିୟମ୍‌ରେ ତା ହାତର ବର୍ଣ୍ଣାଢ୍ୟ ମୂର୍ତ୍ତିମାନ ଏବେ ବି ଶୋଭା ପାଉଛି ।

"ତୁମେ ତାକୁ ଏବେ ବୁଝି ପାରିବ ନାହିଁ । ଉଠରେ ବାବୁମାନେ, ଶବ ଶୋଭା ଯାତ୍ରାର ବନ୍ଦୋବସ୍ତ କର ।"

ମଧୁ ମିଶ୍ରଙ୍କର ଆଖିରୁ ଲୁହ ଟପ୍ ଟପ୍ କରି ଝରି ପଡ଼ୁଥିଲା । ବାଡ଼ି ଟେଣ୍ଡ୍ରକୁ ଧରି ଛିଡ଼ା ହେଲେ । ଘର ଭିତରକୁ ପଶିଲେ ସେ ।

ପଦନ ମହାରଣା ଶବଟା ଚିତ୍‌କାତ୍ ହୋଇ ପଡ଼ି ରହିଥିଲା । ନିର୍ବାକ୍ ନିସ୍ପନ୍ଦ । ମୁହଁରେ ଟିକିଏ ମାତ୍ର ଦୁଃଖ ଓ ଯନ୍ତ୍ରଣାର ଚିହ୍ନ ମଧ୍ୟ ନଥିଲା ।

ପାଖରେ ପଡ଼ି ରହିଥିଲା ଅଙ୍କିତ ଛବିଟିଏ । ପିଞ୍ଜିରା ମଧ୍ୟରେ ଆବକ୍ଷ ଧ୍ୟାନମଗ୍ନ ଏକ ତରୁଣ ସନ୍ନ୍ୟାସୀର ଛବି । ତଳେ ଲେଖା ହୋଇଥିଲା, "ମାନବର ସେବା ହିଁ ଈଶ୍ବରଙ୍କ ସେବା ।" ପଦନ ମହାରଣା ଅଙ୍କିତ ଛବିଟି ଜୀବନର ଶେଷ ଦୀପ ଲିଭିବା ପୂର୍ବରୁ ।

ମଧୁ ମିଶ୍ରେ ତଳୁ ଉଠାଇ ଧରିଥିଲେ ପଦନର ଶେଷ ସମ୍ବଳ । ବାହାରେ ଟୁପ୍ ଟାପ ଭୁଟ୍‌ଭାଟ୍ ବନ୍ଦ ହୋଇ ଯାଇ ଗୀତା ବାଇବେଲ ଓ କୋରାନ୍‌ରୁ ଆବୃତ୍ତି ହେବାକୁ ଲାଗିଥିଲା ।

୧

# ଅସମାପିକା

ଝରକା ଡେଇ ପଡ଼ିଶା ଘରର ଟେପରେକର୍ଡ଼ର ସ୍ୱର ଖୁବ୍ ଜୋରରେ ଆସୁଥିବାରୁ ଦୟାନିଧି ବିରକ୍ତ ବୋଧକଲା । ଏ ପର୍ଯ୍ୟନ୍ତ ସକାଳ ହୋଇନାହିଁ । ସୂର୍ଯ୍ୟଙ୍କର ଲୋହିତ କିରଣ ପୃଥିବୀକୁ ସ୍ପର୍ଶ କରିନାହିଁ । ଦୟାନିଧି ଅଧାଖୋଲା ଝରକାଟିକୁ ସମ୍ପୂର୍ଣ୍ଣ ଖୋଲିବାକୁ ସାହାସ କରୁନାହିଁ । ବାହାରେ ଘନ କୁହୁଡ଼ି ଏବଂ ଥଣ୍ଡା ପବନ, ଝରକା ଫାଙ୍କରେ ପଚ୍ଛୁଆ ପବନ ଘର ଭିତରକୁ ପଶି ଆସୁଛି ଯେପରି । ସେ ନିଜକୁ ରେଜେଇ ଭିତରେ ଭର୍ତ୍ତି କରିଦେଇ ମନେ ମନେ ବିରକ୍ତ ହୋଇଉଠୁଛି । ଏ ଲୋକଗୁଡ଼ାଙ୍କର କାଣ୍ଡଜ୍ଞାନ ନାହିଁ । ମଣିଷକୁ ଶାନ୍ତିରେ ରହିବାକୁ ଦେଉନାହାନ୍ତି । ନା, ଆଉ ଶୋଇ ହେବନି ।

ଅଧା ଆଉଜା ଝରକାକୁ ଖୋଲିଦେଲା ଦୟାନିଧି । ବାହାରେ କୁହୁଡ଼ି ଟପ୍ ଟପ୍ ହୋଇ ପଡ଼ୁଛି । ହାତଘଣ୍ଟାକୁ ମୁଣ୍ଡତଳୁ ଉଠାଇ ଦେଖିଲା; ସାତଟା ବାଜିବାକୁ ଯାଉଛି । ରାସ୍ତାରେ ଗୋଟେ ଗୋଟେ ଲୋକ ଚାଲିବାକୁ ଆରମ୍ଭ କଲେଣି । ସକାଳ ପ୍ରାତଃଭ୍ରମଣରେ ମାରୁଆଡ଼ି ଲୋକଟା ସମସ୍ତଙ୍କ ଆଗ ଚାଲି ଗଲାଣି । ଝରକା ଖୋଲିବା ମାତ୍ରେ ଦୟାନିଧି ଦୃଷ୍ଟି ସିଧା ଆଗେ ତା' ଉପରେ ପଡ଼େ । ଏ ମୁଣ୍ଡରୁ ସେମୁଣ୍ଡ ବୁଲି ପାଞ୍ଚଥର ହେଉଥାଏ ସେ । ଦେହରେ ତା'ର ଅତିବେଶି ଚର୍ବି ଜମିଯାଇ ଲୋକଟିକୁ ପୃଥୁଳକାୟ କରି ପକାଇଛି । ସକାଳୁଆ ଚାଲିଲେ ସୂର୍ଯ୍ୟଙ୍କର ସୁନେଲି କିରଣ ଓ ଶୀତଳ ହାଓ୍ୱା ଚର୍ବିକୁ ତରଳାଇ ଦେଇ ଦେହକୁ ଫିଟ୍ କରିଦେବ ବୋଲି ଟିଭିରେ ଜୋର ସୋରରେ ପ୍ରଚାର ମାରୁଆଡ଼ି ଲୋକଟିର ମୁଣ୍ଡ ଭିତରେ ପଶିଯାଇଛି । ଘରେ ଘିଅ ଖାଇବା ଛାଡ଼ି ପାରିନାହିଁ ସେ ଏପର୍ଯ୍ୟନ୍ତ ।

ଦୟାନିଧି କଡ଼ ଲେଉଟାଇଲା । ହାଇମାରି ରେଜେଇଟାକୁ କଡ଼କୁ ଠେଲିଦେଲା । ଆଠଟା ବାଜିଲାଣି । ଆଜି ରବିବାର । ଅଫିସ ଥିଲେ ସେ ସକାଳୁ ସକାଳୁ ଉଠି ପ୍ରେସର୍

କ୍ଲବ୍‌ଘରରେ ଭୋଜନ କରିଥାନ୍ତି । ଦୀର୍ଘ ଦୁଇବର୍ଷ ହେଲା ଭୋଜନ କରି ସେ ଅଭ୍ୟସ୍ତ ହୋଇଗଲାଣି । ଭାତ ସାଙ୍ଗରେ ଆଳୁଗୋଟେ ଓ ଡ଼ାଲମା ଟିକିଏ ଢାଳି କରି ଗୁଆ ଘିଅକୁ ଖୋଲେଇ ଭାତରେ ପକାଇ ଦେଇ ଖାଇଦିଏ ସେ । ହୋଟେଲରେ କିଛି ଦିନ ଖାଇଥିଲା । ଦେହରେ ଗଲା ନାହିଁ । ଅଳ୍ପଦିନ ଖାଇବା ଭିତରେ ପେଟରେ ଗ୍ୟାସ ଭର୍ତ୍ତି ହୋଇ କଷ୍ଟ ହେଉଥିଲା । ପଇସା ମଧ୍ୟ ସେଥିକୁ କମ୍ ନୁହେଁ । ଦିନକୁ ପନ୍ଦର ଟଙ୍କାରୁ କମ୍ ଖର୍ଚ୍ଚ କରିବାକୁ ପଡ଼ୁନଥିଲା । ସେକ୍ରେଟାରିଏଟ୍‌ର କିରାଣୀ ଚାକିରି । ଘରେ ମାଆ ଦୁଇଟା ସାନ ଭାଇ ଭଉଣୀ । ବହୁ କଷ୍ଟରେ ଏ ଚାକିରି ଖଣ୍ଡିକ ପାଇଥିବା ହେତୁ ତାକୁ କିଛି ସଞ୍ଚୟ କରିବାକୁ ହେବ । ତାଙ୍କର ସେତେ ଥିଲାବାଲା ଘର ନୁହନ୍ତି । ତା' ଚାକିରି ଉପରେ ଅନ୍ୟ ସମସ୍ତ ଜଣ ନିର୍ଭର କରନ୍ତି । ଦୟାନିଧି ରାଜଧାନୀରେ ରହିବା ଦିନଠାରୁ ଶସ୍ତାରେ ଏ ପଲିସିକୁ ନେଇଛି । ମାସକୁ ଶହେ ଟଙ୍କା । ଭୋଜନ କରି ଖାଉଥିବା ହେତୁ ଅଳ୍ପ ଦୁଇଶହ । ଅନ୍ୟାନ୍ୟ ହାତ ଖରଚ ପଚାଶ । ସାଙ୍ଗବାଲା ମେଳରେ କେବେ ବୁଲିଗଲେ ଅଧିକା ଦି' ପଇସା ଖର୍ଚ୍ଚ ହୁଏ ।

ଆଜି ରବିବାର । ଦୟାନିଧିର ବେଶି କିଛି ହାତରେ କାମ ନାହିଁ । ଭୋଜନର ଚିନ୍ତା କରିବାକୁ ହେବ ! ବାସ୍ ···ଦିନମାନରେ ସନ୍ଧ୍ୟାରେ ବୁଲି ଆସିବ ସେ— ସାଙ୍ଗସାଥିମାନଙ୍କ ଗହଣରେ ଆସିବ । ନିହାରିକା ତା ଅଫିସରେ ଚାକିରି କରିଛି । ଭଲ ଟାଇପିଷ୍ଟ ବୋଲି ଅଫିସର ସମସ୍ତଙ୍କ ମୁହଁରେ ତାର ପ୍ରଶଂସା । କେବେ କେବେ ଟାଇପ୍ ଯେ ଅନ୍ୟମାନେ ନ କରନ୍ତି, ତା ନୁହେଁ । ଦୟାନିଧିର ନିହାରିକା ପ୍ରତି ମନ ଭିତରେ କିଛିଟା ଦୁର୍ବଳତା ଅଛି ।

ନିହାରିକା ମନେ ପଡ଼ିବା ମାତ୍ରେ ଦୟାନିଧି ଚଞ୍ଚଳ ହୋଇଉଠିଲା । ରବିବାର ଦିନଟା ତା ଘରେ କଟା ଯାଇପାରେ । ଉଭୟ ମିଶି ସେଠାରେ ଭୋଜନ କରିପାରିବେ । ନିହାରିକା ବିଷୟରେ ତାକୁ ବେଶି କିଛି ମାଲୁମ ନାହିଁ । ତାର ଘର ଓ ପରିବାର ବିଷୟରେ ସେ ଜାଣିବାକୁ କେବେ ବି ଆଗ୍ରହ ପ୍ରକାଶ କରି ନାହିଁ । ସେ ତାକୁ ଦେଖି ଖୁସି ହୋଇଛି—ତାର ସୁନ୍ଦର ରୂପ ଦେଖି ତା ଆଖି ଚମକି ଯାଇଛି । ସେ ମନେ ମନେ ନିହାରିକାକୁ ନେଇ କେତେ କଳ୍ପନା ମଧ୍ୟ କରିଛି । ତାକୁ ପତ୍ନୀ କରିବାକୁ ସେ ଭାବିଛି । କିନ୍ତୁ କାହା ଆଗରେ ପ୍ରକାଶ କରିବାକୁ ସେ ନିଜକୁ ଶଙ୍କୁଚିତ ବୋଧ କରିଛି । ନିହାରିକା ସହିତ ବନ୍ଧୁତ୍ୱକୁ ଗାଢ଼ କରିବାକୁ ଇଚ୍ଛା କରିନାହିଁ । ନିହାରିକା ସମ୍ପର୍କରେ କେହି କଥା କହିବା ବେଳେ ସେ ଶୁଣିବାକୁ ଆଦୌ ଆଗ୍ରହ ପ୍ରକାଶ କରେ ନାହିଁ । ଭଲ ଝିଅ । ତାର ଖୁବ୍ ପସନ୍ଦ ରବିବାର ଦିନଟା ତା ସହିତ କଟାଇଲେ ମନ୍ଦ ହୁଅନ୍ତା ନାହିଁ ।

ଦୟାନନ୍ଧି ମନରେ ନନ୍ଦାଙ୍କା କଥା ଭାବି ଭାବି ବହଁଣା ଉପରୁ ଉଠିପଡ଼ି ବାଥ୍‌ରୁମ ପାଖକୁ ଗଲା । ବାଥ୍‌ରୁମ କହିଲେ ପିଲ୍ଲଡ଼ଲେ ମୁଣ୍ଡ ବାଜୁଥିବା ଘର । ସେଠାରେ ପାଇଖାନା । ଧୀରେ ଧୀରେ ଯିବାକୁ ହୁଏ । ବାଥ୍‌ରୁମ ଭିତରକୁ ଡ଼ଗ ଡ଼େ ମା'ଡ଼ ଚାଲିଯିବା ବେଳେ ହଠାତ୍ ମୁଣ୍ଡଟା ଢ଼ୋ କରି ପିଟି ହୋଇଗଲା ବନ୍ଧରେ । ଲଥ୍ କରି ବସି ପଡ଼ିଲା ଦୟାନନ୍ଧି । କପାଳଟା ଫୁଲିଗଲା । ମଗରେ ଥଣ୍ଡାପାଣି ବୁଇ ଢାଳ ଆଣି ଗୁଡି ଦେଲା ତା ଉପରେ । ଥଣ୍ଡା ଲଗିଲେ ଟିକେ ଭଲଲାଗିବ । ବ୍ରଶ୍‌ରେ ଦାନ୍ତ ଘଷି ଗାଧୋଇ ପଡ଼ିଲା । ଅଯତ୍ନ ବଢ଼ିଥିବା ଦାଢ଼ି ଗୁଡ଼ିକୁ ସଫା କରିବାକୁ ମନ ହେଉଥିଲେ ବି ମୁଣ୍ଡର ଯନ୍ତ୍ରଣା ପାଇଁ ଅଧିକ କିଛି ନ କରି ନନ୍ଦାଙ୍କା ଘରକୁ ଯିବାକୁ ଚଞ୍ଚଳ ହୋଇଉଠିଲା ।

ବସାପାଖ ଚା ଦୋକାନରେ ଏକ କପ୍ ଚା ମାରି ଗୋଲଡ଼ ଫ୍ଲାକ ସିଗାରେଟ୍ ଟାଣି ଟାଣି ସାଇକେଲଟା ଧରି ବାହାରି ପଡ଼ିବାରୁ ମନଟା ଲଗୁଥିଲା ବେଶ୍ ଫୁର୍ତ୍ତି । ନନ୍ଦାଙ୍କା ଘରେ ଛୁଟି ଦିନଟା କଟାଇବା ସ୍ୱାଠାରୁ ତା ପାଇଁ ବଡ଼ ସୌଭାଗ୍ୟ କ'ଣ ଥାଇପାରେ ? ନନ୍ଦାଙ୍କାକୁ ନେଇ ସେ ମନ ଭିତରେ କେତେ କଳ୍ପନା କରିଛି । ଯଦି ସେ ସମୟ ପାଏ ତେବେ– ତାକୁ କହିବ କି ନାହିଁ ସ୍ଥିର କରି ମଧ୍ୟ ସ୍ଥିର କରି ପାରୁ ନ ଥିଲା । ସିଗାରେଟଟି ଶେଷ ହୋଇ ଯାଇଥିଲା । ଜୋରରେ ପେଡ଼ାଲ ମାରିଲା ଦୟାନନ୍ଧି । ରବିବାର ସକାଳଟା ରାଜଧାନୀ ରାସ୍ତା ଶୂନ୍ ଶାନ୍ ଲାଗୁଥିଲା । ଟି.ଭି. ରେ ରାମାୟଣ ଥିବାରୁ ଏପର୍ଯ୍ୟନ୍ତ ଲୋକମାନେ ଘରୁ ବାହାରି ନାହାନ୍ତି । ରାମାୟଣ ଦେଖିବା ତା ଭାଗ୍ୟରେ ଜୁଟୁନାହିଁ । ଗୋଟେ ଗ୍ରେଟ ଟି.ଭି. ଟେ କିଣିବ ବୋଲି ଭାବୁଛି । ହେଲେ ମାସ ଶେଷକୁ ପଇସା ମିଳିବ । ମା ବେଳେ ବେଳେ ଚିଠି ଖଣ୍ଡିଏ ଲେଖାଏ ପଠାଇ ଦେଉଛି ।ସେଥିରେ ଭଉଣୀ ବାହାଘର କଥା ଲେଖିବାକୁ ଅନ୍ତେ ଭୁଲୁ ନାହିଁ । ଭଉଣୀକୁ କୋଡ଼ିଏ ବର୍ଷ ହେଲା । ଆଉ କେତେ ଦିନ ଘରେ ରଖିଥିବ । ଦୟାନନ୍ଧି ମା'କୁ ସବୁବେଳେ ଅସ୍ୱସ୍ତିବାକୁ କହେ । "ତୁ କାହିଁକି ବ୍ୟସ୍ତ ହେଉଛୁ ମା । ମୁଁ ଚାକିରି କରେ ବାହାଘର କଣ ବଳେଇ ଯିବ' ବର୍ଷେ ହେଲା ଦୟାନନ୍ଧି ଏ ଚାକିରି କରି ବହୁତ କଷ୍ଟରେ ଗୁଜୁରାଣ ମେଣ୍ଟାଇ ଯାହା ବଳେ ଘରକୁ ପଠାଇ ଦିଏ । ଅଜିକାଲି ଯୌତୁକ ନ ଦେଲେ କିଏ ଅଛିଏ ବାହା ହେବା କାଠିକର ପାଠ । ଦୟାନନ୍ଧି ନିତି ନିତି ଯୌତୁକ ସମ୍ପର୍କିତ ଖବର ଖବରକାଗଜରୁ ପଢ଼େ । କେତେ କଥା ସାଙ୍ଗ ମେଳରେ ଆଲୋଚନାରୁ ଶୁଣେ । ସେ ନିଜେ ନିଷ୍ପତ୍ତି ନେଇଛି କୌଣସି ଯାକ ଯୌତୁକ ନ ନେଇ ବାହା ହେବ । ସେ ଯିବା ନେବ ନାହିଁ ମାତ୍ର ଭଉଣୀଟିକୁ ଦେବାପାଇଁ ଯୌତୁକ ଆବଶ୍ୟକ । କେଉଁଠୁ ସେ ଏ ଅର୍ଥ ଆଣିବ ?

ଦୟାନିଧି ଏମିତି ଅନେକ କଥା ଭାବୁ ଭାବୁ ନଅ ନମ୍ବର ଫ୍ଲାଟରେ ଥିବା ନନ୍ଦାଶ୍ରୀକାର ଘର ପାଖରେ ପହଞ୍ଚି ଯାଇଥିଲା । ତଳେ ସାଇକେଲଟାକୁ ତାଲା ପକାଇ ଚାହିଁଲା ଉପରକୁ । ନନ୍ଦାଶ୍ରୀକା ଘରର ଝରକା ଖୋଲା । ପତଳା ହୋଇ ଝୁଲୁଛି ତା' ଉପରେ ଉଇଣ୍ଡୋସ୍କ୍ରିନ, ସେ ସିଢ଼ିବାଟ ଦେଇ ଗଲାବେଳେ ଗଦା ଗଦା ଗୋବର ଜମିଥିବାର ଦେଖିଲା । ମାଛି ଭଣଭଣ ହୋଇ ଉଡ଼ିବୁଲୁଛନ୍ତି । ରାଜଧାନୀରେ ଏହା କିଛି ନୂଆ କଥା ନୁହେଁ । ମେଲା ମେଲା ଗାଈ ରାଜଧାନୀ ରାସ୍ତା ସାରା । ସରକାରଙ୍କ ତରଫରୁ କିଛି ରେଷ୍ଟ୍ରିକ୍ସନ୍ ନାହିଁ । ଘରେ ଘରେ ଗାଈ ରଖିବାର ଗୁହାଳ । ଘରର କାନ୍ଥ ମାନଙ୍କର ଗୋବର ଗୁଣ୍ଡି ପଶି ଶୁଖାଇବାର ଦୃଶ୍ୟ ସମସ୍ତଙ୍କର ଦେହସୁହା ହୋଇ ଗଲାଣି ।

ଅତି ସନ୍ତର୍ପଣରେ ସିଡ଼ି ଉପରେ ପାଦ ରଖିଲା ଦୟାନିଧି । ପାହାଚ ପରେ ପାହାଚ ଅତିକ୍ରମ କରି ଦୁଆର ମୁହଁରେ ପହଞ୍ଚି ଯାଇ କବାଟରେ ଠକ୍ ଠକ୍ କଲା ସେ । ଦୁଆର ଖୋଲି ଦେଲା ନନ୍ଦାଶ୍ରୀକା । ସାମନାରେ ଦୟାନିଧିକୁ ଦେଖି ସେ ଆଦୌ ବ୍ୟସ୍ତ ହେଲାନାହିଁ । ସାମାନ୍ୟ ହସି ଭିତରକୁ ଆସିବାକୁ ନିମନ୍ତ୍ରଣ ଜଣାଇଲା ସେ ।

ନନ୍ଦାଶ୍ରୀକା ଘରକୁ ଆସିବା ଏ ତା'ର କିଛି ନୂଆ ନୁହେଁ । ଅନେକ ଥର ସେ ତା' ଘରକୁ ଆସିଛି । କିଛି ନୂତନତ୍ୱ ଅନୁଭବ କରୁ ନଥିଲା ଘର ଭିତରେ ।

ସକାଳୁ ସକାଳୁ ଆମ ଆଡ଼େ କେମିତି ଭୁଲି ଆସିଲେ ? ଆଜି ରୋଷେଇ ନାହିଁକି ? ଏଠି ପଙ୍ଗତ ପକାଇବାର ଇରାଦା ରଖିଛନ୍ତି କି ?

ନନ୍ଦାଶ୍ରୀକାର ଗୋଟିକ ପରେ ଗୋଟିଏ ପ୍ରଶ୍ନ ଶୁଣି ଦୟାନିଧି ବେଶ୍ ଟିକିଏ ଲଜ୍ଜିତ ହେଲା । ନିଜକୁ ଚେୟାରଟା ଉପରେ ସଜାଡ଼ି ନେଇ ବେଶ୍ ସ୍ୱାଭାବିକ ଢଙ୍ଗରେ କହିଲା "ବହୁ ଦିନ ହେଲା ଆପଣଙ୍କ ହାତ ରନ୍ଧା ଖିଆ ହୋଇନି । ଭାବିଲି ରବିବାର ଦିନଟା ଯାହା ହୋଇ ରୋଷେଇ କରିବା, ଭାତ ଡାଲମା ଖାଇ ଖାଇ ଅରୁଚି ଧରି ଗଲାଣି ।"

"ହୋ ହୋ ହୋଇ ହସି ହସି ଉଠିଲା ନନ୍ଦାଶ୍ରୀକା । ଚଳଣିଆ ପିକ୍ନିକ୍ଟା ଭଲ ଜମିବ । ଆପଣ କ'ଣ କରି ପାରିବେ ଯେ ।"

ରୋଷେଇ ବସାଇଲା ଷ୍ଟୋଭରେ ନନ୍ଦାଶ୍ରୀକା । ନନ୍ଦାଶ୍ରୀକା ଦେହର ବାସ୍ନାରେ ଦୟାନିଧି କପରି ଗୋଟାଏ ଅଜଣା ଅନୁଭବ କରୁଥିଲା । ସେ ମନେମନେ ଗୁଣୁଗୁଣୁ ହୋଇ ତା' ରୂପର ପ୍ରଶଂସା କରିଥିଲା ମୁହୂର୍ତ୍ତେକ ଆଖିକୁ ଚାହିଁ ପାରୁନଥିଲା ।

ରୋଷେଇ ସରି ଯାଇଥିଲା ଉଭୟେ ଖାଇ ବସିଲେ ।

ନନ୍ଦାଶ୍ରୀକା ଓ ଦୟାନନ୍ଦ ପରସ୍ପର ବନ୍ଧୁ, ପରସ୍ପରର ସହକର୍ମୀ । ଉଭୟ ଚାହୁଁଥିଲେ ପରସ୍ପରକୁ । ଆଖି ଭାଷା ବୁଝୁଥିଲେ । ମନ କହୁଥିଲା ସେ ଆଗେ କହୁ ।

ଦୟାନନ୍ଦ ଆରମ୍ଭ କଲା, ନନ୍ଦାଶ୍ରୀକା : ତୁମେ ମତେ ଭଲ ଲାଗ । କେବଳ ଭଲ ଲାଗ ନୁହେଁ, ମୁଁ ଚାହେଁ ତୁମର ଯଦି କିଛି ଅନ୍ୟମତ ନଥାଏ ତେବେ ଆମେ ସ୍ୱାମୀ ସ୍ତ୍ରୀ ଭାବରେ ଏକାଠି ରହନ୍ତେ—ପରସ୍ପରକୁ ଭଲ ପାଇ ବଞ୍ଚନ୍ତେ ।

ଏକା ନିଶ୍ୱାସରେ ସବୁତକ କଥା କହିଦେଇ ଦୟାନନ୍ଦ ଗିଲାସରୁ ପାଣି ପିଇଗଲା ।

ନନ୍ଦାଶ୍ରୀକା ଆଖି ଉଠାଇ ଚାହିଁଲା ଦୟାନନ୍ଦକୁ । ଦୟାନନ୍ଦ ତା'ର ସ୍ୱାମୀ ହେଲେ ମନ୍ଦ ହୁଅନ୍ତା ନାହିଁ । ସେ ଦୟାନନ୍ଦ ଆଖିରେ ଅନେକ ପ୍ରତିଶ୍ରୁତି ଦେଖୁଥିଲା ବଞ୍ଚିବାର, ଜୀବନକୁ ଭଲ ପାଇବାର ।

× × ×

ନନ୍ଦାଶ୍ରୀକା ଏବୁଣି ବନ୍ଦ ଡେଇଁ ଘର ଭିତରକୁ ପଶିଯିବା ମାତ୍ରେ ଶାଶୁବୁଢ଼ୀ ପାଖକୁ ଆସି ଫୁସ୍ ଫୁସ୍ କରି କହିଲେ—ବୋଉ ! ଏ ସମୟରେ କ'ଣ ନ୍ୟାହୋଇ ଘରେ ପଶିଲେ ହେବ । ନନ୍ଦେଇର ବାହାଘର ସେକଣ୍ଡରେ ହେଲା, ବେଦୀରେ କେତେ କାମ । ଡମ୍ଭାଟା ନଥିଲା ଯେ କିଛି କ୍ୱାଡ଼୍ ହୋଇ ପାରନ୍ତା । ମୁଁ ମନ୍ଦ ତାକୁ ମନା କରୁଥିଲି...ଝିଅଟାକୁ ତ' ହାତ ନକଲା ପର୍ଯ୍ୟନ୍ତ...ହେଲେ ସେ କ'ଣ ମୋ' କଥା ମାନିଲା । ମଡେଲ ପିଲାଟା । ସୁଲକ୍ଷଣୀ କନ୍ୟା । କେତେ ଝିଅ ଦେବାକୁ ଆସି ନଫର ଫଫର ହେବେ । ଆମ ଗାଁର ମୁଣ୍ଡରେ ଥିବା ପଞ୍ଚୁ ପଣ୍ଡା ତା' ଝିଅକୁ ଦେବାକୁ ଯେତେ ନେହୁରା, ଯେତେ ମଧ୍ୟସ୍ଥି, ପଚିଶ ହଜାର ଟଙ୍କା ଦେବାକୁ କହୁଥିଲେ—ମୁଁ ରାଜି ହେଲିନି । ପୁଅଟାତ...କ'ଣ ବୁଢ଼ା ହୋଇଯାଉଛି ।''

''ସେ କ'ଣ ମୋ' କଥା ମାନିଲା । ଗ୍ରାଡ଼୍, ସେ କଥା, କହିଲା ବେଳକୁ କହିନ ତୋ' ବୋଉ, ସବୁ ଭଲ । ତା' ପଦୁଣାରେ ଦାଣ୍ଡି ବାହାଘରଟା କର ଦେବାନ...।

ନନ୍ଦାଶ୍ରୀକା ଚମକି ଉଠିଲା । ମୁଣ୍ଡ ଉପରୁ ଓଢ଼ଣୀଟା ଖସି ପଡ଼ିଲା ତାର ।

ଶାଶୁଙ୍କ ସାଙ୍ଗରେ ବେଦୀ ଉପରକୁ ଉଠିଗଲା । ନନ୍ଦେ ନାଣ୍ଡିଲ ବାହାଘର । ସେ ତା'ର ସାଉଜ ।

× × ×

ସକାଳୁ ସକାଳୁ ବର ବିଦା ହେବାକୁ ବସିଲା । ଦୟାନନ୍ଦ ଚୁପ୍ ଚୁପ୍ ତା' କାନରେ କହୁଥିଲା—ତୁମେ ପାଠ ପଢ଼ିଛ । ଚାକିରି କରିଛ । ତୁମେ ମୋ' ଅବସ୍ଥା ବୁଝିପାରୁଥିବ । ବୋଉ କଥା ନମାନି ତୁମକୁ ବାହା ହୋଇଛି ବୋଲି... ।

ଏତକ କହି ଦସ୍ମାନିଧି ଚାଲିଯାଇଥିଲା । ଶାଶୁ ଆସି ନିଜ ହାତରେ ତା' ଦେହରୁ ଅଳଙ୍କାରଗୁଡ଼ିକ ଖୋଲି ନେଇ ନଣନ୍ଦ ଦେହରେ ଲଗାଇ ଦେଇଥିଲେ । ଟ୍ରକ୍‌ରେ ନିହାରିକା ଘରୁ ଆସିଥିବା ଜିନିଷପତ୍ର ଡାଲାକୁ ନ ଓହ୍ଲାଇ ଡାଣ୍ଡି ତା' ବର ସାଙ୍ଗରେ ନେଇ ଚାଲିଗଲା । ଦସ୍ମାନିଧି ଭଉଣୀକୁ ଛାଡ଼ିବାକୁ ଗଲା ତାଙ୍କ ସାଙ୍ଗରେ ।

ବିବାହର ପ୍ରଥମ ରାତି ଥିଲା ତା'ପାଇଁ ବେଦନା । ନିହାରିକା ଚୁପ୍‌ଚାପ ଘର ଭିତର ବସି ରହିଥିଲା ।

ପହିଲୁ ପାଳି ଝିଅଟା ଯାଉଛି ଯେତେବେଳେ ପ୍ରଶଂସାଇବାକୁ ନଦେଲେ କେମିତି ହେବ । କ'ଣ କହିବେ ତା ଗାଁ ଲୋକମାନେ । ବୋହୂ ବାପଘରୁ ଲୁଗା ଭାର ଆସିଛି । ମୋ' ପାଖରେ ପଛ ଟଙ୍କା ନାହିଁ ଦେବେ ସେଇ ଭାରକୁ ତା' ଗାଁକୁ ଦେଇଦେବ । ବୋହୂର କେତେ ଲୁଗା ଅଛି । ଖରଚ କରୁଛି । ଆଜି ଗୁହିଁଲେ କାଲିକୁ ପୁଣି କିଣି ଆଣିବ ।

ବୋଉ କଥାକୁ ଏଡ଼ି ପାରିଲା ନାହିଁ ଦସ୍ମାନିଧି । ନିହାରିକା ଘର ଲୁଗା ଓ ବେଭାର ଧରି ବାହାରିଗଲା ଭଉଣୀ ଘର ଆଡ଼େ । ପଛେ ଛୁଟି ମଧ୍ୟ ପଡ଼ିଥିଲା ନିହାରିକାକୁ । ତାକୁ ପଢ଼ିବାର ଆବଶ୍ୟକତା ସେ ଭାବି ନଥିଲା ମଧ୍ୟ । ଗୁହିଁଥିଲା ନିହାରିକା । ମନେ ମନେ ଭାବୁଥିଲା ଦସ୍ମାନିଧି କାହିଁକି ଏପରି ହେଲା । ସେ ପରା କହିଥିଲା—ପରସ୍ପର ଭଲକୁ ପାଇ ବଞ୍ଚିବା । ଭଲ ପାଇବାଠୁ ଦୂରର କଥା, ବଞ୍ଚିବା ପାଇଁ ଯେଉଁ ଆଖ୍ୟା ପଦକ କହିବା କଥା, ତାହା ମଧ୍ୟ ସେ ଭୁଲିଗଲା । ପ୍ରଥମ ରାତି ପାଇଁ ସେ କେତେ ଦିନଧରି କେତେ କଳ୍ପନା କରି ନଥିଲା । ଦସ୍ମାନିଧି ଭଉଣୀକୁ ବିଦା କରିବାକୁ ଚାଲିଗଲା । ପଦେ କହି ଗଲା ନାହିଁ । କହିକରି ଯାଇଥିଲେ କ'ଣ ବା କ୍ଷତି ହୋଇଥାନ୍ତା ।

"ଘରେ ନ ପଶୁଣୁ ଶାଶୁ କହିବେ କ'ଣ ନା ପୁଅ ତାଙ୍କ ଇଚ୍ଛା ବିରୁଦ୍ଧରେ ବାହା ହେଲା ନଚେତ୍ ସେ ପଚିଶ ହଜାର ଟଙ୍କାର ଯୌତୁକ ଆଣିଥାନ୍ତେ । ସେ ତ ଦସ୍ମାନିଧିକୁ ବାହା ହେବାକୁ ବାଧ୍ୟ କରି ନଥିଲା । ଦସ୍ମାନିଧି ପ୍ରଥମେ ନିଜ ଆଡ଼ୁ ବାହା ହେବା କଥା କହିଥିଲା । ଶାଶୁ କ'ଣ ପଚିଶ ହଜାର ଟଙ୍କା ପାଇଲେ ନାହିଁ । ବୋହୂର ମନକଥା କ'ଣ ବୁଝିଲେ କିଛି । ହାତରୁ ଦେହରୁ ସବୁଯାକ ଗହଣା ଗୋଟି ଗୋଟି କରି କାଢ଼ିନେଲେ । ସେ ଆଣିଥିବା ଖଟ ପଲଙ୍କ ପର୍ଯ୍ୟନ୍ତ...। ଚୁପ୍ ଚାପ ସେ ଦେଖିଲା, ପଦେ ବି କହି ନାହିଁ କିଛି ।

ଦସ୍ମାନିଧି କ'ଣ ତାହାକୁ ଟଙ୍କା ପଇସା ଓ ସୁଖସ୍ୱଚ୍ଛନ୍ଦ ଲୋଭରେ ବାହା ହୋଇଥିଲା ? କୁଆଡ଼େ ଗଲା ତା'ର ଭଲ ପାଇ ବଞ୍ଚିବାର ଭାଷା !

ଘୃଣାରେ ଓ କ୍ଷୋଭରେ ନିହ୍ୱାଗ୍ଲକା ଆଖିରୁ ଲୁହ ଦୁଇ ଟୋପା ଖସି ପଡ଼ିଲା । ସେ ନିଜକୁ ଧିକ୍କାର କଲା । ବଞ୍ଚିବାର ଲୋଭ ତା' ମନରୁ ଦୂରେଇ ଗଲା ।

ନିହ୍ୱାଗ୍ଲକା ଘର ଭିତର ବାରଣ୍ଡାରେ ବସି ଭାବୁଥିଲା ତା'ର ଅତୀତ, ଭବିଷ୍ୟତ ଓ ବର୍ତ୍ତମାନ ।

ଦୁଆର ମୁହଁରେ ସ୍ୱର ବେଗରକୁ ଥୋଇଦେଇ ଅଡ଼କା ମାରି ବସି ପଡ଼ିଲା ଦୟାନିଧି । ଆସିବାବେଳୁ ତା' ମନଟା ଆଦୌ ଭଲ ଲାଗୁନଥିଲା । ଟଙ୍କା ନଥିବା ହେତୁ ତା' ସ୍ତ୍ରୀ ଘର ସମସ୍ତ ଜିନିଷ ସେ ବୋହି ଆଣିଥିଲା ଭଉଣୀ ଘରେ ଦେବାକୁ । ମୂଳରୁ ଏପରି ଘଟିବ ବୋଲି ସେ କଳ୍ପନା କରି ନଥିଲା । ନିହ୍ୱାଗ୍ଲକା ପ୍ରତି ତା'ର ବ୍ୟବହାରରେ ସେ ନିଜକୁ ଦୋଷୀ ମଣୁଥିଲା । ବାହାଘର ବାସିଠାରୁ ଏ ପର୍ଯ୍ୟନ୍ତ ଯାହା ସବୁ ଘଟି ଯାଉଥିଲା, ସେଥିପାଇଁ ସେ ବିବ୍ରତ ବୋଧ କରୁଥିଲା । ତଥାପି ଭଉଣୀ ଶାଶୁଘର ଲୋକମାନେ ତାଙ୍କ ଦେବାନେବାରେ ସନ୍ତୁଷ୍ଟ ନଥିଲେ । ଭିଣୋଇ ଭଲକରି ପଦେ କଥା କହୁ ନଥିଲା । ନମସ୍କାର ପକାଇବା ତ ଦୂରର କଥା । ତାଙ୍କ ଘରର ଲୋକମାନଙ୍କର ଆଖିର ବ୍ୟବହାର ତାକୁ କିଛି ଭଲ ଲାଗୁନଥିଲା ।

ଦୟାନିଧି ବେଗର ଜିନିଷ ଦାଣ୍ଡ ବାରଣ୍ଡାରେ ରଖି ବସିଥିଲା । ଏପର୍ଯ୍ୟନ୍ତ କେହି ଦୁଆର ଖୋଲୁ ନାହାନ୍ତି । ସେ ଦୁଇ ତିନିଥର ଡ଼ାକ ପକାଇଲାଣି । ପୁଣି ଫେରି ଯିବାକୁ ହେବ । ସନ୍ଧ୍ୟା ହେଲାଣି । ଘରେ ପହଞ୍ଚିବା ବେଳକୁ ରାତି ଦଶଟା ହୋଇପାରେ । ରାତି ପାହିଲେ ପ୍ରଥମାଷ୍ଟମୀ । ନିହ୍ୱାଗ୍ଲକା ପାଇଁ ଲୁଗା ଖଣ୍ଡେ ଗଲାବେଳେ ସେ କିଣିନେବ ବୋଲି ଭାବୁଛି ।

କିଛି ସମୟ ପରେ ଦୁଆର ଖୋଲି ନାଣ୍ଡି ଶାଶୁ ଡ଼ମା ଡ଼ମା ଆଖିରେ ତାକୁ ଚାହିଁ ପଚାରିଲେ କେତେବେଳେ ଆସିଲ ? କାହିଁକି ଆସିଛ ? ଦୟାନିଧି ଘର ଭିତରକୁ ନେଇ ପ୍ରଥମାଷ୍ଟମୀ ବେଗର ରଖିଦେଲା । କାହାର ପାଟିତୁଣ୍ଡ ଶୁଭୁ ନାହିଁ । କେମିତି ମାଡ଼ ପଡ଼ିବା ପରି ଲାଗୁଛି ।

ନାଣ୍ଡି ନାହିଁକି ମା ? ମୋର ଟିକିଏ ଆସିବା ଡେରି ହୋଇଗଲା । ମୋତେ ପୁଣି ଫେରି ଯିବାକୁ ହେବ । ନାଣ୍ଡିକୁ ଡାକଦେଲେ ଦେଖାକରି ଚାଲିଯିବି ।

ନାଣ୍ଡି ଶାଶୁ ଉତ୍‌କ୍ଷିପ୍ତ ଗଳାରେ କହି ଉଠିଲେ, ମୁଁ କ'ଣ ତୋ ଭଉଣୀକୁ ଲୁଚାଇ କରି ରଖିଛି । ସେ ଅଲକ୍ଷଣୀଟା ଆସିଲା ଦିନରୁ ମୋ ଘରେ ଶାନ୍ତିନାହିଁ । ବାହାଘର ବେଳେ କହିଥିଲ ପଚିଶ ହଜାର ଟଙ୍କା ଦେବ ବୋଲି । ତୁମେ ରାଜି ହୋଇଥିଲ । କାହିଁ, ଦେଲ କେଉଁଠି ? ଗହଣା ଆଦି ଲଗାଇଲେ ଚାଳିଶ ହଜାର

ହେବ । ପ୍ରଥମାଷ୍ଟମୀ ଲୁଗା ଆଣିବ ବୋଲି ସନ୍ଧ୍ୟା ହେଲା । ତୁମ ଭଉଣୀକୁ ମୁଁ କ'ଣ ଲୁଗା କିଣି ଦେଇଥାନ୍ତି" ?

ନାଣ୍ଡି ଶାଶୁର କଥାଗୁଡ଼ାକ ତାକୁ ଭଲଲାଗୁ ନଥିଲା । ସେ ଧୀରେ ଧୀରେ କହିଲା, ଅଫିସରୁ ଫେରି ଆସିବାକୁ ଡେରି ହୋଇଗଲା, ଯୌତୁକ ବାବଦ ଅବଶିଷ୍ଟ ଟଙ୍କା ଦେବାକୁ ମୋ ପାଖରେ ବର୍ତ୍ତମାନ ତ ନାହିଁ । ମୁଁ କିସ୍ତିସ୍ତ ଦେବି । ସେଥିପାଇଁ ଚିନ୍ତାକରନ୍ତୁ ନାହିଁ" ।

ନିଆଁରେ ପାଣି ପକାଇବାପରି ନାଣ୍ଡି ଶାଶୂ ଗର୍ଜି ଉଠିଲେ । ସବୁ ଦେଲାବାଲା । ଦେବା ବେଳେ ତ ଦେଲ ନାହିଁ । ସେଇ ରାଗରେ ନୋହିଟା ମୋର ଚାଲିଗଲା । କି ଯୋଗରେ ପୁଅଟାକୁ ବାହା କରିଥିଲି କେଜାଣି, ଝିଅଟା ମୋତେ ସର୍ବସ୍ୱାନ୍ତ କରିଦେଲା । ବାହୁନିବାକୁ ଲାଗିଲେ ସେ ।

ଦୟାନିଧି ସବୁକଥାକୁ ଚୁପ୍ ଚାପ୍ ଶୁଣି ଯାଉଥିଲା ! ଦୁଆର ମୁହଁରେ ସେତେବେଳକୁ ଗାଁର ସାଇ ମାଇପେ ଜମା ହୋଇ ଯାଇଥିଲେ । ଚାହିଁ ରହିଥିଲେ ଦୟାନିଧିଙ୍କୁ ବଲ ବଲ ହୋଇ । ଦୟାନିଧି ବୁଝି ପାରୁ ନଥିଲା, ତାକୁ ନେଇ ଏ ସବୁ କ'ଣ ଘଟୁଛି ହଠାତ୍ ଜମିଥିବା ସ୍ତ୍ରୀଲୋକମାନଙ୍କ ଭିତରୁ କେହି କହିଲ ଦଛରେ ପୁଅ । ବେଷ୍ଟରଟା ଟିକିଏ ସକାଳୁ ଆଣିଲୁ ନାହିଁ ଝିଅଟା ସେଇ ରାଗରେ ପୋଡ଼ିହୋଇ···

ନାଣ୍ଡି ଆଉ ନାହିଁ । ସମସ୍ତଙ୍କୁ ଚାହିଁଲା ଦୟାନିଧି ତଳକୁ ମୁହଁ କରି ଆଖିରୁ ଗଡ଼ି ପଡ଼ୁଥିଲା ଧାର ଧାର ଲୁହ । କୋହକୁ ଚାପିରଖି ନପାରି ଭେଁ କରି କାନ୍ଦି ପକାଇଲା ସେ । ଆଗକୁ ବଢ଼ାଇଲା ଗୋଟିଏ ଗୋଟିଏ ପାଦ । ପଛରେ ପଡ଼ି ରହିଲା ପ୍ରଥମାଷ୍ଟମୀ ବେଷ୍ଟର ।

ଘରେ ପହଞ୍ଚିଲା ବେଳକୁ ରାତି ଦଶଟା । ଦୁଆର ମୁହଁରେ ଗାଁ ସାରା ଲୋକେ ଦେଖି ଶଙ୍କି ଗଲା ସେ । ମନେ ମନେ ଭାବିଲା ଏତେ ଶୀଘ୍ର କ'ଣ ନାଣ୍ଡି ଖବର ଗାଁରେ ପହଞ୍ଚିଗଲା । ଏତେ ଲୋକ ତା ଦୁଆର ମୁହଁରେ କାହିଁକି ?

ସମସ୍ତଙ୍କୁ ଆଡ଼େଇ ଭିତରକୁ ପଶିଲା ସେ । ହଠାତ୍ ତା ଆଖି ଆଗରେ ନିହାରିକା ତଳେ ଚିତ୍ ହୋଇ ଶୋଇଥିବାର ଦେଖି ଚମକି ପଡ଼ିଲା । ଧଳା ଲୁଗାଟା ଘୋଡ଼ାଇ ହୋଇଛି ନିହାରିକା । ମା' ତାର ବାହୁନି ବାହୁନି କାନ୍ଦି ଗାଲି ବର୍ଷଣ କରୁଛି ବୋହୂ ଉପରେ । ଦୟାନିଧି ନିଜ ଆଖିକୁ ବିଶ୍ୱାସ କରି ପାରୁ ନଥିଲେ । ତା ସ୍ତ୍ରୀ ନିହାରିକା ସବୁଦିନ ପାଇଁ ଯେ ତାକୁ ଛାଡ଼ି ଚାଲିଯାଇଛି । ଦୟାନିଧି ବିଶ୍ୱାସ କରି ପାରୁ ନଥିଲେ ନିଜକୁ । କାହିଁକି ନିହାରିକା ତାକୁ ଛାଡ଼ି ଚାଲିଲେ ? କାହିଁକି ସେ ଭ୍ରୂଣର

ଉତ୍ତର ଅଜ ପାଉ ନଥିଲା । କେବଳ ଗୋଟିଏ କଥା ତା ମନରେ ଉଙ୍କି ମାରୁଥିଲା
ଆମେ ତୁମେ ସାଙ୍ଗ ହୋଇ ଭଲ ପାଇ ବଞ୍ଚିବା ।

ତା ଆଖିରେ ଲୁହ ନଥିଲା । ତବ ତବ ଅଖିକର ସେ ନନ୍ଦାଶ୍ୱିକାର ଶୋଇ ରହିଥିବା ଶରୀରକୁ ଚାହିଁ ରହିଲା । ଲୋକମାନେ କୋକେଇ ସଜାଡ଼ି ନନ୍ଦାଶ୍ୱିକାକୁ ଧରି ମଶାଣି ଅଭିମୁଖେ ଚାଲିଲେ । 'ରାମ ନାମ ସତ୍ୟ ହେ', 'ରାମ ନାମ ସତ୍ୟ ହେ' । ଦୟାନିଧି କାନରେ ପଶି ଯାଉଥିଲା । ଦୟାନିଧି ଚୁପ୍ ଚାପ ଚାହିଁ ରହିଥିଲା ନନ୍ଦାଶ୍ୱିକାର ଜଳନ୍ତା ଶରୀରକୁ । ହୁତୁ ହୁତୁ ହୋଇ ଜଳିଯାଉଛି ତାର ନରମ କୋମଳ ହାତ ପାପୁଲି— ଚମ୍ପା କଢ଼ି ପରି ଆଙ୍ଗୁଠି—ସଦ୍ୟ ଫୁଟା ଗୋଲାପର ମୁହଁ—ଯୋଡ଼ାଏ ଡଗର ଆଖି— ଶୁଆ ପକ୍ଷୀର ନାକ । ଧୀରେ ଧୀରେ ତାର ସିନ୍ଦୂରମଖା ମୁହଁଟି ଅଗ୍ନି ଶିଖାରେ ଜଳିପୋଡ଼ି ପାଉଁଶ ହୋଇ ଯାଉଛି ।

× × × ×

ଗାଁ ମୁଣ୍ଡ ବରଗଛ ମୂଳେ ଦୟାନିଧି ପଡ଼ି ରହିଥିଲା । ସେ ଧନଠାରୁ ଚୁପ୍ ଚୁପ୍ କହୁଥିଲା ରାମନାମ ସତ୍ୟ ହେ···ରାମନାମ ସତ୍ୟ ହେ···ଆମେ ସାଙ୍ଗ ହୋଇ ଭଲ ପାଇ ବଞ୍ଚିବା···ନନ୍ଦାଶ୍ୱିକା···ଆମେ ସାଙ୍ଗ ହୋଇ ଭଲ ପାଇ ବଞ୍ଚିବା··· । କାହାକୁ କିଛି କହୁ ନଥିଲା ସେ । ତାର ଦାଢ଼ୀ ବଢ଼ିଯାଇଥିଲା । ବାଳ ଫୁରୁ ଫୁରୁ ହୋଇ ଉଡ଼ୁଥିଲା । ଆଖି ପଶି ଯାଇଥିଲା ଭିତରକୁ । ଦେହରେ ଧୂଳି ମାଟିରେ ନେଶି ହୋଇଥିବା ପ୍ୟାଣ୍ଟଜାମା । ସେ ବରଗଛ ମୂଳରୁ ଉଠି କେବେ କେବେ ରାସ୍ତାରେ ଚାଲିଗଲା ବେଳେ କହୁଥିଲା—ରାମନାମ ସତ୍ୟ ହେ, ରାମନାମ ସତ୍ୟ ହେ ।



# ବନ୍ଦୀ

ଆସନ୍ତା କାଲି ଶୋଭାଯାତ୍ରାରେ ଜେଲ ଯିବାକୁ ହେବ । ଜେଲ ଯିବା କିନ୍ତୁ ସହଜ କଥା ନୁହେଁ । ବହୁଥର ମୁଁ ଜେଲ ବିଷୟରେ ଭାବିଛି । ଚିନ୍ତା କରିଛି ଜେଲର ଚାରିକାନ୍ଥ ଭିତରେ କଣ ସବୁ ଘଟେ । ରାସ୍ତା କଡ଼ରେ ଜେଲର ବଡ଼ ବଡ଼ ପ୍ରାଚୀର । ମୋ କଳ୍ପନାରେ ଜେଲଖାନା ଅପରାଧି ମାନଙ୍କର ଅଡ୍ଡାସ୍ଥଳୀ । ଜେଲ ଯିବାକୁ କିଏ ବା ଭଲ ପାଏ । ଜାଣି ଜାଣି କେହି ଜେଲ ଯିବାକୁ ଇଚ୍ଛା କରେ ନାହିଁ । ଜେଲଖାନାର ଚାରି କାନ୍ଥ ଭିତରେ ସବୁ ବନ୍ଦ । ବାହାରିବା କେବଳ ସ୍ୱପ୍ନ । ପିଲା ଦିନରୁ ଜେଲଖାନା ପ୍ରତି ମୋର ଭାରି ଭୟ । ଭୟହିଁ ରୂପ ନେଇଛି ବିତୃଷ୍ଣା ।

ଆସନ୍ତା କାଲି ହେବ ଶୋଭାଯାତ୍ରା । ମୁଁ ନେତୃତ୍ୱ ନେଇଛି ଶ୍ରମିକ ଆନ୍ଦୋଳନର । ମୋତେ ଜେଲ ବରଣ କରିବାକୁ ହେବ । ସରକାରଙ୍କ ବିରୁଦ୍ଧରେ ଆମର ଏହି ସଂଗ୍ରାମ, ଶ୍ରମିକ ମାନଙ୍କ ପାଇଁ ଦାବୀ ହାସଲ କରିବାକୁ । ଆନ୍ଦୋଳନର ନୂଆ ରୂପ 'ଜେଲଭରୋ' ।

ମୁଁ ଜେଲଖାନାକୁ ଭୟ କରେ । ମନରେ ଏହି ଅହେତୁକ ଭୟ ଭୟଙ୍କର ଭାବରେ ମାଡ଼ି ବସିଛି ମୋତେ । ମୁଁ ନେତୃତ୍ୱ ନେଇଥିବା କାରଣରୁ ମୋତେ ଜେଲ ଯିବାକୁ ହେବ । ମାନସିକ ପ୍ରସ୍ତୁତ ନିମିତ୍ତ ମୁଁ ହୋଇଉଠିଲି ବ୍ୟଗ୍ର । ଜେଲ ଗଲେ କଣ ଘଟିବ, ତା ମୁଁ କଳ୍ପନା କରିବାକୁ ଲାଗିଲି ।

ଜେଲ ଯାଉଥିବା ଲୋକେ ସାଧାରଣଙ୍କ ଚକ୍ଷୁରେ ଘୃଣ୍ୟ । ମୁଁ ସେହିହେତୁ ବିବ୍ରତ ବୋଧ କଲି । ମୁଁ ଜେଲ ଗଲେ କଣ ଭାବିବେ ଲୋକେ । କଣ ହେବ ମୋ ପରିବାରର ଅବସ୍ଥା । ବେଶି ବେଶି ଉଦ୍‌ବିଗ୍ନ ହୋଇପଡ଼ିଲି ମୋ ପରିବାରର ଚିନ୍ତାରେ । ମୋ ସ୍ତ୍ରୀ ଛୁଆପିଲାଙ୍କୁ ଧରି ଚଳି ପାରିବେ ତ । ପାଠ ଅଳ୍ପ ପଢ଼ିଛନ୍ତି । ବେଶି ପଢ଼ିଥିଲେ ସ୍କୁଲରେ ଖଣ୍ଡିଏ ହୁଏତ ମିଳିଥାନ୍ତା । ଗାଁରେ ଯେତିକ ଜମି ଅଛି, ବର୍ଷକ ଚଳିବା କଷ୍ଟ । ପିଲାମାନେ ବଡ଼ ବଡ଼ ହେଲେଣି, ସେମାନଙ୍କର ପାଠ ପଢ଼ା ଦାୟିତ୍ୱ ଅଛି । ପିଲାଗୁଡ଼ିକୁ ଜନ୍ମ କରି ସ୍ତ୍ରୀ ରୋଗିଣା ହୋଇଯାଇଛନ୍ତି । ଦେହରେ ମାଂସ ପଲେ ମଧ୍ୟ ନାହିଁ । ସେ ମୋର ଜେଲ ଯିବା କଥା ଶୁଣିଲେ କଣ ଭାବିବେ । ହଠାତ୍ ଯଦି ତାଙ୍କର କିଛି ହୋଇଯାଏ, ତେବେ ଛୋଟ ଛୋଟ ପିଲାଙ୍କ ଦାୟିତ୍ୱ କିଏ ନେବ ?

ପିଲାମାନଙ୍କର ଭବିଷ୍ୟତ ଦେଖିବା ପ୍ରତ୍ୟେକ ବାପର ଦାୟିତ୍ୱ । ମୁଁ ଯଦି ସେ ଦାୟିତ୍ୱକୁ ଠିକ୍ ଭାବରେ ପାଳନ ନକରେ, ତେବେ ପିଲାମାନେ ବଡ଼ ହେବାପରେ ବାପକୁ କାହିଁକି ପଚାରିବେ । ମୋର ଜେଲ ଯିବା ସେମାନଙ୍କ ଉପରେ କ'ଣ ପ୍ରଭାବ ପକାଇବ ନାହିଁ । ସମାଜରେ ସେମାନଙ୍କର ସ୍ଥାନ କେଉଁଠି ହେବ ? ଜେଲ ଯାଇଥିବା ବାପର ପୁଅ କହିବାକୁ ସେମାନେ ଘୃଣାବୋଧ କରିବେ ନାହିଁ ତ ?

ଝିଅବୋଲି ବଡଟେ । କେତେ ଶରଧାରେ ତା ନାଁ ଦେଇଛି ମିଲି । ମିଛିମିଛିକା ବୋହୂ ଖେଳ । ସ୍କୁଲକୁ ଗଲାବେଳେ କେତେ ଜିଦ୍, ଆଜି ନୂଆ ଫ୍ରକ ତ କାଲି ଚପଲ

ଘଡ଼ିକର ପରେ କହିଲେ ଆଖିରେ ଆଖିଏ ଲୁହ । କେମିତି କହିବ ସେ, କିଏ ତାକୁ ଶାଶୁଘରକୁ ପଠାଇବ । କିଏ ତାକୁ ତା ମନପସନ୍ଦ ଜିନିଷ କିଣିଦେବ । ତା' ବାହାଘର ତା' ମନଲାଖି କିଏ ଠିକ୍ କରିବ । ବାପା ଚିନ୍ତାରେ ଝୁରି ସେ ଆଖିରୁ ଲୁହ ଗଡ଼ାଇବ ନାହିଁ ତ ?

ଯାହା ହେଲେ ମଧ୍ୟ ମୋତେ କାଲି ଜେଲ ଯିବାକୁ ହେବ । ସେଦିନ ମିଟିଂରେ କେବଳ ମୋତେ ଯିବାକୁ ସର୍ବସମ୍ମତି କ୍ରମେ ସ୍ଥିର ହେଲା । କାରଣ ମୁଁ ସେମାନଙ୍କର ନେତା । ମୁଁ ପଛଘୁଞ୍ଚା ଦେଲେ ସେମାନଙ୍କର ମୋ' ନେତୃତ୍ୱ ଉପରେ କାହିଁକି ଆସ୍ଥା ରହିବ । କାହିଁକି ସେମାନେ ମୋତେ ଠିକ୍ ଭାବରେ ଗ୍ରହଣ କରିବେ । ମୁଁ ମନା କରିପାରିଲି ନାହିଁ । ଦୃଢ଼ ସ୍ୱରରେ ଘୋଷଣା କଲି, "ମୁଁ ମୋର ସାଥିମାନଙ୍କ ପାଇଁ ମରିବାକୁ ପ୍ରସ୍ତୁତ । ଏ ଜୀବନ ସାମାନ୍ୟ ମାତ୍ର । ଯେତେ ଝଡ଼ଝଞ୍ଜା ଆସିଲେ ମୁଁ ସମ୍ମୁଖୀନ ହେବାକୁ ପ୍ରସ୍ତୁତ । ଜେଲଯିବା ସାମାନ୍ୟ କଥା ।" ବଡ଼ ବାହାଦୁର ଭାବରେ ଏ କଥା କହିବା ବେଳେ କେହି ଧିକ୍କାର କରି କହୁଥିଲା, ନେତା ହୋଇଛୁ ବୋଲି କାହିଁକି ଏତେ ଫୁଟାଣି । କଣ ଭାବି ଯାଉଥିଲୁ ଜେଲ ଯିବାକୁ ରାଜି ହୋଇ ନଥିଲେ । ନେତା ହୋଇଛନ୍ତି ଅର୍ଥ ପରିବାରକୁ ତ୍ୟାଗ କରିବା ନୁହେଁ । କିଏ କାହା ପରିବାରକୁ ମଝି ନଈରେ ଭସାଇ ଦେଇ ଚାଲି ଯାଉଛୁ । ସେମାନେ ମଧ୍ୟ ଭାବିବା ଦରକାର ତୁମର ପରିବାର ଅଛି । ସାନ ସାନ ପିଲାମାନେ ଅଛନ୍ତି ସେମାନଙ୍କର ଭବିଷ୍ୟତ ଅଛି ।

ଏବେ ବି ବେଳ ଅଛି । ମନା କରିଦେ । ଜେଲ ଯାଇପାରିବୁ ନାହିଁ । ସରକାର ନିୟମ ବଦଳାଉଛନ୍ତି । ଜେଲ ଭରେ ଆନ୍ଦୋଳନ କଲେ ସରକାର କଣ ନିୟମ ବଦଳାଇବା ବନ୍ଦ କରିଦେବେ ।"

ମନ ଭିତରର କଥା ଜିଭ ଆଗକୁ ଆସୁ ନ ଥିଲା । କେମିତି କହିପାରିଥାନ୍ତି ସାଥିମାନଙ୍କୁ ଯେଉଁମାନଙ୍କୁ ମୁଁ ମୋ' ପରିବାର ପରି ଭଲ ପାଏ, ଯେଉଁମାନଙ୍କ ପାଇଁ ମୁଁ ମୋ' ଜୀବନ ଦେବାକୁ ପ୍ରସ୍ତୁତ ।

ମୋତେ ପ୍ରସ୍ତୁତ ହେବାକୁ ହେବ । ମାନସିକ ବଳକୁ ଦୃଢ଼ କରିବାକୁ ହେବ । ମୋତେ ଜେଲ ଯାଇ ସମସ୍ତଙ୍କୁ ଦେଖାଇ ଦେବାକୁ ହେବ ମୁଁ ଭୟଶୂନ୍ୟ । ସେଇଥିପାଇଁ ମୋର ଏ ନେତୃତ୍ୱ । ଭୟାଳୁ ନେତୃତ୍ୱ ନେବାକୁ ଅଯୋଗ୍ୟ ।

ମୁଁ ଜେଲ ଯିବି । ମୋ' ପରିବାର ଯେମିତି ଚାଲିବା କଥା ଚାଲିବ । ସମୟର ସ୍ରୋତ ଭିତରେ ସମସ୍ତେ ଭାସି ଭାସି ଚାଲିବେ ।

ମୋତେ ଆସନ୍ତା କାଲି ପାଇଁ ମାନସିକ ପ୍ରସ୍ତୁତ ହେବାକୁ ପଡ଼ିବ । ଜେଲଭରେ ଆନ୍ଦୋଳନ । ଜେଲ ଯିବାରେ ଭାଗ ନେବାକୁ ହେବ । ରାତିଟା ପାହୁ ନ ଥିଲା । ମନରେ ଅନେକ ବିକ୍ଷିପ୍ତ ଚିନ୍ତା । ନିଦ ନ ଥିଲା ଆଖିରେ । ଭାସି ଉଠୁଥିଲା ଜେଲ ଯାଉଥିବାର ଚିତ୍ର ।

ପୁଲିସ ମାନଙ୍କର ଦୟାମାୟା ନାହିଁ । ସେମାନେ ନିଶ୍ଚିତଭାବେ ଲାଠିରେ ମାଡ଼ ଦେବେ । କାହାର ମୁଣ୍ଡ ଫାଟିବ, କାହାର ଭାଙ୍ଗିବ ଗୋଡ଼ । ମୋତେ ଆଗ ଯିବାକୁ ହେବ, କାରଣ ମୁଁ ନେତା । ପୁଲିସର ଲାଠି ମାଡ଼ ପ୍ରଥମେ ଆରମ୍ଭ ହେବ ମୋ' ଉପରେ । ସେମାନେ ମୋତେ ଘୋଷାଡ଼ି ଘୋଷାଡ଼ି ପୁଲିସ ଭ୍ୟାନ ଭିତରେ ଭର୍ତ୍ତି କରିଦେବେ । ମୋ' ହାତ ଗୋଡ଼ରେ ଛନ୍ଦି ପକାଇବେ ଲୁହା ଜଞ୍ଜିର । ଫିଙ୍ଗି ଦେବେ ଜେଲଖାନାର ରୁଦ୍ଧ ପ୍ରକୋଷ୍ଠ ଭିତରେ । ଭୟଙ୍କର କଇଦୀରେ ଭରପୁର ସେଇ ଜେଲଖାନା ।

କି ଭୟଙ୍କର ଜେଲଖାନା । କେମିତି ମୁଁ ରହିବ ତା' ଭିତରେ । ନରହତ୍ୟାର ଖୁଣୀ ଆସାମୀମାନେ ଭର୍ତ୍ତି ହୋଇଥିବେ । ସେମାନେ ମୋତେ ଲାଥ ମୁଠା ମାରି-ପକାଇବେ । କଲ୍‌ବଲ୍ କରି ମୋ ଶରୀରକୁ ଛିନ୍ ଛିନ୍ କରିଦେବେ ।

ଜେଲଖାନା ଭିତରର ସେହି ରୁଦ୍ଧ କୋଠରୀ ଭିତରେ । ମୁଁ ଦେଖିପାରିବି ନାହିଁ ସୂର୍ଯ୍ୟ କିରଣ । ବଗଡ଼ା ଚାଉଳର ଗୋଡ଼ି ମିଶା ଭାତ ମୋ' ତଣ୍ଟିରେ ଗଳିବ ନାହିଁ । ପିଲଭର ଅଂକରେ ଫୋପାଡ଼ି ଦେବେ ମୋ' ଉପରକୁ ମେଞ୍ଚାଏ ଭାତ ଓ ଦୁଇଟି ରୋଟି । କେମିତି ଖାଇବି ତାକୁ । ସେମାନେ ମୋତେ କାହିଁକି ଉପଯୁକ୍ତ ଭଲ ଖାଇବାକୁ ଦେବେ । ମୁଁ ଆଇନ ଭାଙ୍ଗି ଆସିଥିବା କଏଦୀ । ମୁଁ ସରକାରଙ୍କ ନିୟମ ବିରୁଦ୍ଧରେ ଲଢ଼ୁଥିବା ଶ୍ରମିକଟିଏ । ମୋ' ପ୍ରତି ସେମାନେ କାହିଁକି ଦୟା ପ୍ରଦର୍ଶନ କରିବେ । ଦୟା ସେମାନଙ୍କ ହିସାବ ଖାତାରେ ନାହିଁ । ସେମାନେ ମୋତେ ଲାଥ ମୁଠା ମାରିବେ ନାହିଁ । ମୋତେ ଛଳଛଳ କରି ଅନୁତାପ ହୋଇ ମରିବାକୁ ଛାଡ଼ିଦେବେ ।

ସେମାନେ ମୋତେ ବନ୍ଦୀ କରି ରଖିଦେବେ ରୁଦ୍ଧ ପ୍ରକୋଷ୍ଠ ମଧ୍ୟରେ ଜୀବନ ସାରା । ଜେଲ ଯିବା ପୂର୍ବରୁ ମୁକୁଳିବାର ବ୍ୟବସ୍ଥା କରିବା କଥା । ମୁଁ ଏଯାଏ ତାହା କରିନାହିଁ । ଦିନସାରା କେବଳ ଭାବୁଛି । ଅବଶ୍ୟ କେତେ ଜଣ ସାଥି ଜାଣିଛନ୍ତି । ସେମାନେ କଣ ମୋତେ ମୁକ୍ତ କରିବେ···ଯଦି ନ କରନ୍ତି, ତେବେ······ ।

ମୁଁ ସେହି ଘୃଣକାନ୍ଥ ଭିତରେ ସଢ଼ି ହୋଇ ପଡ଼ି ରହିବ ମୃତ୍ୟୁ ଅପେକ୍ଷାରେ । ସେଇ କ୍ଷୁଦ୍ର କୋଠରୀ । ଆଲୋକ ଶୂନ୍ୟ । ଫ୍ୟାନ୍ ନାହିଁ । ମଶାମାନେ ଭିଡ଼ଭିଡ଼ । ସେମାନେ ମୋ' ଦେହରେ ବସି ଶୋଷି ନେବେ ସବୁ ରକ୍ତ । ଚଟାଣ ଉପରେ ହେଁସ ଖଣ୍ଡିଏ ହେବ ମୋର ବିଛଣା । ପିଢ଼ା ହେବ ମୋର ତକିଆ । ନିଦ କେମିତି ହେବ । ନ ଖାଇ, ନ ଶୋଇ ମୁଁ ବଞ୍ଚିବି ଶୀର୍ଣ୍ଣକାୟ ଦେହ ନେଇ କେତେଦିନ ।

ଜେଲରୁ ମୁକ୍ତ ହେବା ପରେ ମଧ୍ୟ ମୋର ଶୀର୍ଣ୍ଣକାୟ ତନୁରେ ମାଂସ ଲାଗିବ ନାହିଁ । ମନରେ କାର୍ଯ୍ୟ କରିବାକୁ ଆଗ୍ରହ ଆସିବ ନାହିଁ । ତଥାପି ମୋତେ ଜେଲ ଯିବାକୁ ହେବ । ମୋତେ ଜେଲର ସେହି ଅନ୍ଧାରୁଆ ପ୍ରକୋଷ୍ଠ ମଧ୍ୟରେ ଘଣ୍ଟା, ଦିନ, ମାସ, ବର୍ଷ କଟାଇବାକୁ ହେବ ।

ମୁଁ ଆଉ ମୁକ୍ତ ପକ୍ଷୀ ନୁହେଁ । ମୁଁ ମୋ' ନିଜ ଇଚ୍ଛାରେ ବୁଲି ପାରିବି ନାହିଁ । ମୋର ପ୍ରିୟ ପୁସ୍ତକ ଦେଖି ପାରିବି ନାହିଁ । ପ୍ରିୟ ଖାଦ୍ୟ ମୋ' ନିମିତ୍ତ ହେବ ସ୍ୱପ୍ନ । ଶଯ୍ୟା ମୋର ସ୍ୱାସ୍ଥ୍ୟକୁ ଶିଥିଳ କରିଦେବ । ଜୀବନର ଇଚ୍ଛାମାନ ମରିଯିବେ କ୍ରମଶଃ । ମୁଁ ଏକାବେଳକେ ହୋଇପଡ଼ିବି ଅନ୍ତଃସାରଶୂନ୍ୟ ରହିତ ।

ତଥାପି ମୋତେ ଜେଲ ଯିବାକୁ ହେବ କାରଣ ମୁଁ ନେତା । ମୁଁ ଜେଲ ନଗଲେ ଅନ୍ୟମାନେ ମୋତେ ଉପହାସ କରିବେ । ମୋ ନେତୃତ୍ୱର ଅବଜ୍ଞା କରିବେ । ସେମାନେ ଏକ ସ୍ୱରରେ ସ୍ୱୀକାର କରୁଛନ୍ତି ମୋ ନେତୃତ୍ୱ । ତାକୁ ମୁଁ ହରାଇବି କେମିତି । ନା ମୁଁ ମାରିବ ନାହିଁ । ନେତୃତ୍ୱ ହରାଇବି ନାହିଁ ।

ଆଃ, ରାତିଟା ବେଶ୍ ବଡ଼ । ସକାଳ ହେବା ମାତ୍ରେ ମୋତେ ଜେଲଯାତ୍ରା ପାଇଁ ପ୍ରସ୍ତୁତ ହେବାକୁ ହେବ । ସାଥିମାନେ ଦଳ ଦଳ ହୋଇ ଆସି ମୋତେ ଫୁଲମାଳ ଅର୍ପଣ କରିବେ । ଜିନ୍ଦାବାଦ ଧ୍ୱନିରେ ମୋ ଗ୍ରାମ କମ୍ପି ଉଠିବ । ଶୋଭାଯାତ୍ରାରେ, ଜୟ ଜୟକାର ଧ୍ୱନିରେ ମୋତେ ସାଥିମାନେ ସାଙ୍ଗରେ ଧରି ଆଗକୁ ମାଡ଼ି ଚାଲିବେ । ପୁଲିସର ସଶସ୍ତ୍ର ପ୍ରହରୀ ମଧ୍ୟରେ ମୋତେ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗ ଦେଇ ଆଇନକୁ ଭାଙ୍ଗିବାକୁ ହେବ ଏବଂ ପୁଲିସ ମୋତେ ଗିରଫ କରିବେ । ଜିନ୍ଦାବାଦ ଧ୍ୱନିରେ ସେ ସ୍ଥାନ ମୁଖରିତ ହୋଇ ଉଠିବ ।

ମୋତେ ଆସନ୍ତା କାଲି ଜେଲ ଯିବାକୁ ହେବ ନିଶ୍ଚିତ ରୂପେ । ଘଣ୍ଟା ହେଉଁକନା ବାଜିଗଲା । ସକାଳର ସୂର୍ଯ୍ୟକିରଣ ବିଚ୍ଛୁରିତ ହୋଇ ପଡ଼ୁଥିଲା ସେତେବେଳକୁ । ପତ୍ନୀ ସ୍ନାନ ସାରି ଚା ପ୍ରସ୍ତୁତ କରିବାରେ ବ୍ୟସ୍ତ ଥିଲେ । ମୋ ଆଡ଼କୁ ଲକ୍ଷ୍ୟ କରି ବନ୍ଦ ପାଟିରେ କହିଲେ, “ସକାଳୁ ଆଠ ଆଠଟା ବାଜିଲଣି, କେତେବେଳେ ଉଠିବ । ଘରେ ପରିବା ନାହିଁ । ପିଲାମାନେ ଆଉ ଘଣ୍ଟାଏ ପରେ ସ୍କୁଲକୁ ଯିବେ । ପରିବା ମାର୍କେଟରୁ ଆସିଲେ ଶୀଘ୍ର ହେବ ।”

ଧଡ଼ପଡ଼ ହୋଇ ଉଠି ବସିଲି ମୁଁ । ମୋ ଭିତରେ ଚାଲିଥିବା ଝଡ଼ ବିଷୟରେ ସେ କେମିତି ବା ଜାଣିବେ । ମୁଁ ଯେ ଆଜି ଜେଲ ଯିବି, ଏକଥା ସେ ଜାଣିନାହାନ୍ତି । ଜାଣିଲେ ଏତେବେଳକୁ ଧୈର୍ଯ୍ୟଚ୍ୟୁତି ଘଟିଥାନ୍ତା । ମୁଁ ତାଙ୍କୁ କହିବି କି ନାହିଁ ଏ ପର୍ଯ୍ୟନ୍ତ ସ୍ଥିର କରିପାରିନାହିଁ । ନ କହିଲେ ସେ ପରେ ଅବଶ୍ୟ ଜାଣିବେ । ଆଜି ପରିବା କିଣିବାର ଶେଷଦିନ ମୋ ପାଇଁ ।

ବ୍ୟାଗ ଧରି ବାହାରିଲି ପରିବା କିଣିବାକୁ । ରାସ୍ତାରେ ଅନେକ ବନ୍ଧୁ ଦେଖାହେଲେ । କାହାକୁ କିଛି କହିବାର ଆବଶ୍ୟକତା ଅନୁଭବ କଲି ନାହିଁ ।

ଘଣ୍ଟାରେ ବାଜିଲାଣି ଦଶ । ଖିଆପିଆ ଶେଷ । ସ୍କୁଲକୁ ପିଲାମାନେ ବାହାରି ଗଲେଣି । ମନେ ମନେ ଭାବିଲି ଏକାନ୍ତ ଡାକି ପତ୍ନୀଙ୍କୁ କହିବି, “ଆଜି ମୋତେ ଜେଲ ଯିବାକୁ ହେବ । ମୁଁ ଘରକୁ ଆଉ ଫେରି ନ ପାରେ । ମୋର ନ ଆସିବା ପାଇଁ ଦୁଃଖ କରିବ ନାହିଁ । ସାମୂହିକ ସ୍ୱାର୍ଥକୁ ଆଖି ଆଗରେ ରଖି ମୋତେ ଜେଲ ଯିବାକୁ ହେବ ।

ତୁମର ଦାୟିତ୍ୱ ନିଶ୍ଚିତ ଭାବରେ ସାଥୀମାନେ ନେବେ । କେବେହେଲେ ତୁମେ ଏକେଲା ଅନୁଭବ କରିବ ନାହିଁ । ପିଲାମାନଙ୍କ କଥା ବୁଝିବ । ସେମାନେ ତୁମକୁ ଜଗିଲେ । ଏତେଦିନ ପରେ ତୁମଠାରୁ ଅଲଗା ହୋଇ ଯାଉଛୁ । ମନ ଦୁଃଖ କରିବ ନାହିଁ । ଜେଲର ବନ୍ଦ କୋଠରୀ ମଧ୍ୟରେ ତୁମ କଥା, ପିଲାମାନଙ୍କ କଥା ମନେ ପଡ଼ିବ । ତାରି ଭିତରେ ଆମେ ପରସ୍ପର ବାନ୍ଧି ହୋଇ ବଞ୍ଚି ରହିବା ।"

ମନକଥା ମନରେ ରହିଲା । ପତ୍ନୀଙ୍କୁ ଖାଲି କହିଲି, "ଆଜି ଆସିବାକୁ ଡେରି ହୋଇପାରେ । ମୋ ପାଇଁ ଅପେକ୍ଷା ନ କରି ଖାଇପିଇ ଶୋଇ ପଡ଼ିବ ।" ଲୁହ ଆଖିକୁ ଆସିବାକୁ ଉପକ୍ରମ କରୁଥିଲା । କୋହ ସମ୍ବରଣ କଲି । ପତ୍ନୀ ମୋ ଆଡ଼କୁ ଛଳ ଛଳ ଆଖିରେ ଅନାଇଲେ । ସେ ଯେପରି ମୋତେ କହୁଥିଲେ, "ମୁଁ ସବୁ ଜାଣେ । ତୁମେ ଆଦୌ ବ୍ୟସ୍ତ ହୁଅନାହିଁ ।"

ଷ୍ଟେସନ ନିକଟରେ ପହଞ୍ଚିବା ବେଳକୁ ଭ୍ୟାନ ବାହାରିବାର ଉପକ୍ରମ କରିଥିଲା । ସାଥୀମାନେ ଏକଯୁଟି ହୋଇ ପତାକା ଧରି ସ୍ଲୋଗାନ ମାନ ଦେଉଥିଲେ । ଜିନ୍ଦାବାଦ ଧ୍ୱନିରେ ଷ୍ଟେସନ ପାଖ ଅଞ୍ଚଳ କମ୍ପି ଉଠୁଥିଲା । ରାସ୍ତା ଚାଲି ଲୋକମାନେ ଠିଆ ହୋଇ ଉତ୍କଣ୍ଠିତ ଭାବରେ ଚାହିଁ ରହୁଥିଲେ ।

ଭ୍ୟାନ କ୍ରମଶଃ ଆଗକୁ ମାଡ଼ି ଚାଲିଲା । ବିଧାନସୌଧ ଫାଟକ ଧୁଟରୁ ହଜାର ହଜାର ଲାଠିଧାରୀ ପୁଲିସ ଆମର ରାସ୍ତା ଅବରୋଧ କଲେ । ମୁଁ ସରକାରଙ୍କ ବିରୁଦ୍ଧରେ ଏକ ଉତ୍ତେଜନାପୂର୍ଣ୍ଣ, ଆବେଗମୟ ଭାଷଣ ଦେଲି । କରତାଳି ଓ ଜିନ୍ଦାବାଦ ଧ୍ୱନିରେ କମ୍ପି ଉଠିଲା ରାଜଧାନୀର ରାସ୍ତା ।

ଆଗେ ଆଗେ ମୁଁ । ପଛରେ ଅନ୍ୟ ଅନେକ । ଆମେ ପୁଲିସର କର୍ଡନ ନିକଟରେ । ଲାଠି ଧରିଥିବା ପୁଲିସ ମାଡ଼ି ଆସିବେ । ମୋତେ ଗିରଫ କରି ଘୋଷାରି ନେବେ, ମାତ୍ର ସେପରି କିଛି ଘଟିଲା ନାହିଁ । ପୁଲିସ ଅଧିକାରୀ ବିନମ୍ର ଭାବରେ ମୋତେ ଭ୍ୟାନ ଦିଗକୁ ବାଟ କଢ଼ାଇ ନେଲେ । ଭ୍ୟାନ ଚାଲିଲା । ଜିନ୍ଦାବାଦ ଧ୍ୱନି ଚାଲିଥିଲା ଅନବରତ । ପୁଲିସ ଫାଣ୍ଡିରେ ପହଞ୍ଚିବା ବେଳକୁ ଆମର ରହିବା ପାଇଁ ବ୍ୟବସ୍ଥା କରାଯାଇଥିଲା । ମୋତେ ସମ୍ମାନର ସହ ନେଇ ଚୌକିରେ ବସିବାକୁ କହିଲେ । ହାତକୁ ବଢ଼ାଇ ଦେଲେ ଖବରକାଗଜ । ଦେଶ ବିଦେଶର କଥା ପଢ଼ିବାରେ ବ୍ୟସ୍ତ ରହି ମୁଁ ଜାଣି ପାରିଲି ନାହିଁ, ସମୟ କେତେ ହେଲାଣି । କେହି ଜଣେ ପୁଲିସ ଅଧିକାରୀ ମୋତେ ଖାଦ୍ୟ ଖାଇବାକୁ ଅନୁରୋଧ କଲେ । ଭୋକରେ ପେଟ ଜଳୁଥିଲା, ଡାଲମା ଭାତକୁ ପେଟପୂରା ଭର୍ତ୍ତି କରିଦେଇ ମୁଁ ତଳକୁ ଓହ୍ଲାଇବା ବେଳେ ଏସ୍. ପି: ମହାଶୟ ମୋ ନିକଟକୁ ଆସି କରମର୍ଦ୍ଦନ କରି କହିଲେ, "ଆପଣମାନେ ବର୍ତ୍ତମାନ ମୁକ୍ତ । ଘରକୁ ଯାଇ ପାରନ୍ତି ।" ମୁଁ ତାଙ୍କୁ ବଲବଲ କରି ଅନାଇ ରହିଲି । ଗେଟ ପାଖରେ ପହଞ୍ଚିବା ବେଳକୁ ମୋର ସାଥୀମାନେ ତୃପ୍ତ ହୋଇ ଜିନ୍ଦାବାଦ ଧ୍ୱନି ପକାଇ ଚାଲିଥିଲେ ।

ମୁଁ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଥିଲି ସେମାନଙ୍କୁ ଓ ପଛରେ ଛାଡ଼ି ଆସୁଥିବା ଥାନାର ଗେଟକୁ । ବହୁ ଦୂରରେ ଥିବା ଜେଲର ପ୍ରାଚୀର ମୋର ଦୃଷ୍ଟିରୁ ଅପସରି ଯାଉଥିଲା ।